# ମଧୁସ୍ମରଣିକା

ସଂପାଦିକା ହେମଲତା ମାନସିଂହ

ପ୍ରକାଶକ
ଶ୍ରୀ ରବୀନ୍ଦ୍ରନାଥ ମହାନ୍ତି
କଟକ ପବ୍‌ଲିଶିଂ ହାଉସ୍
ବାଲୁବଜାର, କଟକ—୨

ପ୍ରଥମ ସଂସ୍କରଣ
୧୯୬୧

ମୂଲ୍ୟ—ଏକଟଙ୍କା ମାତ୍ର

ମୁଦ୍ରାକର
ଶ୍ରୀ ରବୀନ୍ଦ୍ରନାଥ ମହାନ୍ତି
କଟକ ପବ୍‌ଲିଶିଂ ପ୍ରେସ
କଟକ

# ସୂଚୀପତ୍ର

## ମହୀୟସୀ ନାରୀ

### ପଦେ ଅଧେ

'ମହୀୟସୀ ନାରୀ' ଏହି ପର୍ଯ୍ୟାୟରେ ପ୍ରଜାତନ୍ତ୍ରର 'ନାରୀ ଜଗତ'ରେ ଅନେକ ଗୁଡ଼ିଏ ଲେଖା ପ୍ରକାଶିତ ହୋଇଥିଲା । ମୁଁ ଦେଖିଲି ଯେ ଏଗୁଡ଼ିକ ଏକତ୍ର କରିଦେଲେ ଆମ ନାରୀମାନଙ୍କ ପାଇଁ ଅନ୍ତତଃ ଖଣ୍ଡିଏ ଭଲ ପୁସ୍ତିକା ହୋଇପାରିବ । ସେଇଥିରୁ କେତୋଟି ମାତ୍ର ଏଥିରେ ସନ୍ନିବେଶିତ ହୋଇଅଛି ।

କଟକ ପବ୍ଲିଶିଂ ହାଉସ୍ ଏହାକୁ କାର୍ଯ୍ୟରେ ପରିଣତ କରିଥିବାରୁ ତାଙ୍କୁ ଧନ୍ୟବାଦ ଦେବା ସଙ୍ଗେ ସଙ୍ଗେ ଯେଉଁମାନଙ୍କ ଲେଖା ପ୍ରକାଶିତ ହୋଇଛି ସେମାନଙ୍କୁ ମଧ୍ୟ ଶ୍ରଦ୍ଧାଜ୍ଞାପନ କରୁଅଛି ।

ଶ୍ରୀମତୀ ହେମଲତା ମାନସିଂହ

ତା ୫ । ୧୦ । ୬୦

# ଆହୃତାଗ୍ନିକା

ମାୟାଧର ମାନସିଂହ

ଗ୍ରୀକ୍ ପୁରାଣରେ ଅଛି ଯେ, ମନୁଷ୍ୟମାନେ ପୃଥିବୀରେ କଷ୍ଟମୟ ଜୀବନଯାପନ କରୁଥିଲେ । ସେମାନଙ୍କର ଦୁଃଖ ଦୂର କରିବା ପାଇଁ ଦେବପୁତ୍ର ପ୍ରମିଥିୟୁସ୍ ଦେବତାମାନଙ୍କଠାରୁ, ଅଶେଷ ଲାଞ୍ଛନା ସହି ମଧ୍ୟ, ସେମାନଙ୍କର ଏକଚାଟିଆ ଅଧିକାରରୁ ଛଡ଼ାଇ ଆଣି ସର୍ବ-ପ୍ରଥମେ ମନୁଷ୍ୟକୁ ଅଗ୍ନି ଦାନ କଲେ । ଫଳରେ ମନୁଷ୍ୟ ଆଜି ଦେବତାମାନଙ୍କପରି ଶକ୍ତିଶାଳୀ, ଦୁର୍ଦ୍ଧାନ୍ତ ପ୍ରକୃତି ଉପରେ ବିଜୟୀ ସମ୍ରାଟ । ଅଗ୍ନି, ମାନବିକ ସଭ୍ୟତାର, ମାନବିକ ଶକ୍ତିର ପ୍ରତୀକ, ଆମ୍ଭମାନଙ୍କର ପ୍ରସବିତା ସୂର୍ଯ୍ୟ ଦେବଙ୍କର ପାର୍ଥିବ ପ୍ରତିନିଧି । ବୈଦିକ ଆର୍ଯ୍ୟମାନେ ପ୍ରତ୍ୟହ ଅଗ୍ନିର ପୂଜା କରୁଥିଲେ । ପଣ୍ଡିତ ମାକ୍ସମୁଲର, ଗ୍ରୀକ୍ ପ୍ରମିଥିୟୁସ୍ ଶବ୍ଦ ସଂସ୍କୃତ ପ୍ରମନ୍ଥ ବା ପ୍ରମନ୍ଥନରୁ ଜାତ ବୋଲି ନିର୍ଦ୍ଦେଶ ଦେଇଛନ୍ତି । ଅର୍ଥାତ୍, ବୈଦିକ ଯଜ୍ଞରେ ଆରଣି-କାଠ ଦୁଇଖଣ୍ଡକୁ ମନ୍ଥନ କରି ଯେଉଁ ଅଗ୍ନି ଜାତ କରାଯାଉଥିଲା, ସେହି ମନ୍ଥନ ବା ପ୍ରମନ୍ଥନ ଗ୍ରୀକ୍ କଳ୍ପନାରେ ପ୍ରମିଥିୟୁସ୍ ହୋଇ ଉଠିଛି । ସେହି ପ୍ରମିଥିୟୁସ୍ ପାଶ୍ଚାତ୍ୟ ଜଗତରେ ଅଗ୍ନିର ଆବିଷ୍କାରକ ଓ ମନୁଷ୍ୟର ଓ ମନୁଷ୍ୟ ସଭ୍ୟତାର ପ୍ରଥମ ଜନକ ଓ ବନ୍ଧୁ ।

ବୈଦିକ କାଳରେ ପୁରୁଷ ଅପେକ୍ଷା ନାରୀଥିଲା ଅଗ୍ନି ସଙ୍ଗେ ଘନିଷ୍ଠ ଭାବରେ ଜଡ଼ିତ । ଗୃହରେ ଯେଉଁ ପବିତ୍ର ଅଗ୍ନିକୁ ଚିରଜ୍ୱଳମାନ ରଖିବାକୁ ପଡ଼ୁଥିଲା, ତାର ତତ୍ତ୍ୱାବଧାରଣୀ ଥିଲା ନାରୀ । ପ୍ରାତ୍ୟହିକ ପୂଜାରେ ଗୃହସ୍ଥ ଓ ଗୃହିଣୀ ଉଭୟେ ସମବେତ ଭାବରେ ଅଗ୍ନିରେ ସମିଧ ସଂଯୋଗ କରି ଋକ୍ ଉଚ୍ଚାରଣ କରୁଥିଲେ । ଆହିତାଗ୍ନିକ ପୁରୁଷ ପରି ନାରୀର ମଧ୍ୟ ଗୌରବମୟ ଉପାଧି ଥିଲା ଆହିତାଗ୍ନିକା ।

କେବଳ ବୈଦିକ କାଳରେ ବା ଭାରତରେ ନୁହେଁ, ପୃଥିବୀର ସର୍ବତ୍ର ଓ ଇତିହାସର ସବୁ କାଳରେ ନାରୀ ଓ ଅଗ୍ନି ଘନିଷ୍ଠ ଭାବରେ ସଂପୃକ୍ତ । ନରର ପ୍ରତ୍ୟେକ କୁଟୀରରେ ନାରୀର ଅଞ୍ଜଳି ଦେଇ ସକାଳ ଓ ସନ୍ଧ୍ୟାରେ ପ୍ରତ୍ୟହ ଅଗ୍ନି ଜଳି ଉଠେ । ସେହି ଅଗ୍ନି ସାହାଯ୍ୟରେ ନାରୀ ହୁଏ ଅନ୍ନପୂର୍ଣ୍ଣା । ବାହାରର ଅଗ୍ନି ସାହାଯ୍ୟରେ ନରର ଅଭ୍ୟନ୍ତରୀଣ ଜଠରାଗ୍ନି ପ୍ରତୋଷିତ ହୁଏ । ଯେଉଁ କୁଟୀରରେ ଅଗ୍ନି ଜଳେ ନାହିଁ, ସେଠି ଅନ୍ଧକାର, ନିରନ୍ନତା, ମୃତ୍ୟୁ । ନିରଗ୍ନି ଜୀବନ ନାରୀ କଳ୍ପନା କରି ପାରେ କି ? ବରଂ ପ୍ରିୟଜନଙ୍କୁ ସନ୍ତୁଷ୍ଟ କରିବାପାଇଁ, ସହସ୍ର ସହସ୍ର ନାରୀଙ୍କ ଜୀବନରେ ଚୁଲ୍ଲୀ-ଅଗ୍ନିର ଧାସରେ ସିଝିବାଠାରୁ ଅଧିକତର ଆନନ୍ଦ ନଥାଇ-ପାରେ । ଅଗ୍ନିର ସମ୍ପର୍କରେ ସୁନା ଓ ଅନ୍ୟାନ୍ୟ ଧାତୁର ଔଜ୍ଜ୍ୱଲ୍ୟ ବଢ଼େ, ଏହା ସମସ୍ତେ ଜାଣନ୍ତି । ରନ୍ଧନ—କ୍ରିୟା ଭିତରେ ପୁରବାଳାଙ୍କର, ଲାବଣ୍ୟ ଯେ ରସାଣିତ ହୋଇ ଉଠେ ଏହା ଲକ୍ଷ୍ୟ କରିବାର କଥା ।

ଆଜ ଭାରତର ନୂତନ ନାରୀ ସେମାନଙ୍କର ବୈଦିକ ଯୁଗର ଭଗିନୀମାନଙ୍କ ପରି ଅଗ୍ନିକୁ ନିଜର ସମ୍ମାନିତ ଆଦର୍ଶ ରୂପେ ଗ୍ରହଣ

କରିବାକୁ ଶିଖିବେକି ? ଅଗ୍ନି ଓ ନାରୀ ପରସ୍ପରର ପ୍ରତୀକ;—ସୁନ୍ଦର, କିନ୍ତୁ ତେଜୋମୟ, ଶକ୍ତିମୟ, ଏକ ଦିଗରେ ସଂହାରକ ପୁଣି ଅନ୍ୟ ଦିଗରେ କଲ୍ୟାଣଦାୟିନୀ । ଅଗ୍ନି ଆଦର୍ଶ ହେଲେ, କୌଣସି ଭାରତୀୟ ନାରୀକୁ ଜଗତର କୌଣସି ପାଷଣ୍ଡ ବଳାତ୍କାରରେ ଗ୍ରହଣ କରି ପାରନ୍ତା ନାହିଁ ବା ନାରୀ, ବଜାର-ଦ୍ରବ୍ୟ ପରି ମୂଲ୍ୟ ହୁଅନ୍ତା ନାହିଁ । ଆଜି ଦରକାର, ଭାରତର କୋଟି କୋଟି ନାରୀ ଓ ତରୁଣୀ, କୋଟି କୋଟି ଆହିତାଗ୍ନିକା ହୋଇ ଅବତୀର୍ଣ୍ଣା ହେବେ—ଏକ ହସ୍ତରେ ଅନ୍ନପାତ୍ର ସର୍ବଜୀବର କ୍ଷୁଧା ନିବୃତ୍ତି ପାଇଁ, ଅନ୍ୟ ହସ୍ତରେ ଅଗ୍ନିଶିଖା ପରି ଗୃରସିକ ତରବାରି, ଯା'ର ତେଜରେ ଦୁର୍ବୃତ୍ତ, ପାଖକୁ ଆସିବାକୁ ଭୟ କରିବ । ଆଜି ସୀତା, ସାବିତ୍ରୀ, ଦ୍ରୌପଦୀର କାହାଣୀ ଦେଶରେ କେବଳ କାହାଣୀ ହୋଇ ରହିଛି । ସହସ୍ର ସହସ୍ର କୁମାରୀ ମାଟ୍ରିକ୍ୟୁଲେଟ୍ ବା ଗ୍ରାଜୁଏଟ୍‌ରେ ଦେଶର କୌଣସି ଲାଭ ନାହିଁ, ଯେପର୍ଯ୍ୟନ୍ତ ପାଷଣ୍ଡମାନଙ୍କ ଭୟରେ ଆମର ନାରୀ ଶଙ୍କିତା । ଆଜି ଆମର ଦରକାର, ଘରେ ଘରେ ଆହିତାଗ୍ନିକାର ଦଳ,—ଅଗ୍ନିଶିଖା ପରି ଲାବଣ୍ୟମନୋରମ, ପ୍ରିୟଜନଙ୍କୁ କଲ୍ୟାଣମୟୀ, କିନ୍ତୁ ପାପ, ଅନାଚାର ଦୁର୍ବୃତ୍ତ ପାଇଁ ସେହି ଅଗ୍ନିଶିଖା ପରି ଜ୍ୱାଳାମୟ ଅସ୍ତ୍ର ।

"ଜାଗ ଭାରତ ନାରୀ"

---

# ଭାରତୀୟ ନାରୀ

ହେମଲତା ମାନସିଂହ

ଭାରତୀୟ ନାରୀର ସୁନାମ ଅପେକ୍ଷା ଦୁର୍ନାମ ବହୁତ । ପୁରୁଷ ସମାଜ ତାଙ୍କୁ ଗୃହମଧ୍ୟରେ ଆବଦ୍ଧ ରଖି ଅବଳା, ଦୁର୍ବଳା ନାମ ଦେଇ କେବଳ ଉପଭୋଗ୍ୟ ବସ୍ତୁ କରି ରଖିଛି । ଏହାର ଏଇ ବିଂଶ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ ବିଶେଷ କୌଣସି ପରିବର୍ତ୍ତନ ହୋଇନାହିଁ । ଏବେ ବି ନାରୀ ଗୃହକୋଣରେ ଆବଦ୍ଧ ରହି ନିର୍ଯ୍ୟାତିତା ହେଉଛି ।

କିନ୍ତୁ, ଭାରତୀୟ ନାରୀର ନାମ ବାହାରକୁ ପ୍ରକାଶ ପାଉ ନ ଥିଲେ ମଧ୍ୟ ସେ ବନମଲ୍ଲୀ ପରି ତାର ସୁବାସ ବିତରଣରେ କୌଣସି କୁଣ୍ଠା ପ୍ରକାଶ କରିନାହିଁ । ଯୁଗେ ଯୁଗେ ଭାରତୀୟ ନାରୀ ବୈଦିକବାଣୀର ମର୍ଯ୍ୟାଦା ରଖିଆସିଛି । ହିନ୍ଦୁ ବିବାହ ସମୟର କେତୋଟି ବୈଦିକ ଶ୍ଳୋକ ଏଠାରେ ଉଲ୍ଲେଖ କରାଗଲା । ସେଥିରୁ ଭାରତରେ ବିବାହର ଆଦର୍ଶ ସମ୍ବନ୍ଧରେ ବୁଝା ପଡ଼େ ।

"ସଖା ସପ୍ତପଦା ଭବ ସଖ୍ୟନ୍ତେ ଗମେୟମ୍ ।
ସଖ୍ୟଂ ତେ ମା ଯୋଷାଃ ସଖ୍ୟାଂ ତେ ମା ଯୋଷ୍ଠ୍ୟାଃ ।"

ଏକତ୍ର ସପ୍ତପଦ ଅର୍ଥାତ୍ ଭୂରାଦି ସପ୍ତଲୋକ ଯିବାକୁ ତୁମେ ମୋର ସଖୀ ହୁଅ । ମୁଁ ମଧ୍ୟ ତମ ସଙ୍ଗେ ସଖ୍ୟ ସୂତ୍ରରେ ଆବଦ୍ଧ ହେଲି । ତମର ମୋର ସଖ୍ୟଫଳରେ ଦୁହେଁ ଏକତ୍ର କ୍ରମଶଃ ଉନ୍ନତି

ମାର୍ଗରେ ଆରୋହଣ ପୂର୍ବକ ଏକାନ୍ତ ଏଇ ପୃଥିବୀଠାରୁ ସତ୍ୟ ଲୋକକୁ ଉନ୍ନୀତ ହେବା । ତମର ମୋର ସଖ୍ୟ ବନ୍ଧନ ଯେପରି ଅନ୍ୟ ସ୍ତ୍ରୀ ଲୋକ ଦ୍ୱାରା ନଷ୍ଟ ନ ହୁଏ—ଏବଂ ସୁଖକାରଣୀ ରମଣୀମାନେ ତମର ମୋର ସଖ୍ୟ ବନ୍ଧନ ସୁଦୃଢ଼ କରନ୍ତୁ ।

"ଓଁ ଗୃଭ୍ଣାମି ତେ ସୌଭଗତ୍ୱାୟ
ହସ୍ତଂ ମୟା ପତ୍ୟା ଜରଦଷ୍ଟିର୍ଯଥାସଃ
ଭଗୋ ଅର୍ଯ୍ୟମା ସବିତା ପୂରନ୍ଧ୍ରୀର୍ମହ୍ୟଂ
ତ୍ୱାଽଦୁର୍ଗାର୍ହପତ୍ୟାୟ ଦେବାଃ ।"

ମୁଁ ତୁମକୁ ମୋର ସୌଭାଗ୍ୟ ନିମନ୍ତେ ଗ୍ରହଣ କରୁଛି । ତୁମେ ମୋର ସୌଭାଗ୍ୟର ଏକମାତ୍ର ଅବଲମ୍ବନ, ଠିକ୍ ଯେପରି ବୃକ୍ଷର ଅବଲମ୍ବନ ଯଷ୍ଟି । ସୂର୍ଯ୍ୟ, ପୃଥିବୀ ଆଦି ଦେବତାମାନେ ସୌଭାଗ୍ୟ ନିମନ୍ତେ ମୋ ସହିତ ତୁମକୁ ସଂଯୋଗ କରନ୍ତୁ ।

"ଓଁ ଇମମଶ୍ମାନ ମାରୋହ ଅଶ୍ମେବ ତ୍ୱଂ ସ୍ଥିରାଭବ,
ସସହ୍ୱ ପୃତନାୟତୋ ଅଭିତଷ୍ଟ ପ୍ରତନ୍ୟତ ।"

ଏଇ ଶିଳା ଉପରେ ଆରୋହଣ କର । ଶିଳାପରି ସ୍ଥିର ହୁଅ । ଶିଳାପରି ସହନଶୀଳ ହୁଅ । ସୈନ୍ୟପରି ଚତୁର୍ଦ୍ଦିଗରେ ବୃଦ୍ଧିପ୍ରାପ୍ତ ହୁଅ ।

ସ୍ୱାମୀ-ସ୍ତ୍ରୀ ସମ୍ବନ୍ଧରେ ଗୋଟିଏ ଚମତ୍କାର ଆଦର୍ଶ ନିମ୍ନଲିଖିତ ମନ୍ତ୍ରଟି ମଧ୍ୟରେ ଆମେ ଦେଖିବାକୁ ପାଉ । ପତି ସ୍ତ୍ରୀ ନିକଟରୁ କାମନା କରୁଛନ୍ତି—

"ଯଦେ ତତ୍ ହୃଦୟଂ ତବ
ତଦସ୍ତୁ ହୃଦୟଂ ମମ,
ଯଦିଦଂ ହୃଦୟଂ ମମ
ତଦସ୍ତୁ ହୃଦୟଂ ତବ ।"

ତୁମର ଏଇ ହୃଦୟ ମୋର ହୃଦୟ ହେଉ । ମୋର ହୃଦୟ ତମର ହୃଦୟ ହେଉ ।

ବିବାହର ବୈଦିକ ମନ୍ତ୍ର ମଧ୍ୟରେ ସ୍ୱାମୀ-ସ୍ତ୍ରୀର ପ୍ରେମ ବନ୍ଧନର ଯେ ଆଲେଖ୍ୟ ଦେଖିବାକୁ ମିଳେ, ତାହା ଭାବାଦର୍ଶର ମହିମାରେ ପ୍ରୋଜ୍ଜ୍ୱଳ ।

ଅତି ପ୍ରାଚୀନ କାଳରେ ମଧ୍ୟ ନର ନାରୀର ଏଇପରି ଶ୍ରେଷ୍ଠ ଆଦର୍ଶ ସମାଜ ସମ୍ମୁଖରେ ସ୍ଥାପିତ ଥିବାରୁ ବ୍ୟକ୍ତି ଓ ସମାଜ-ଜୀବନ ଅପୂର୍ବ ସାର୍ଥକଥାରେ ମଣ୍ଡିତ ହୋଇଥିଲା । ତାହା ଆଜି କାହିଁ ? ଇହକାଳ ପରକାଳରେ ବିଚ୍ଛେଦ ନାହିଁ ଭାବି ସ୍ୱାମୀ ଏଇ ମନ୍ତ୍ର ଉଚ୍ଚାରଣ କରି ସ୍ତ୍ରୀ ସହିତ ସଖ୍ୟବନ୍ଧନରେ ଆବଦ୍ଧ ହୋଇଥାନ୍ତି । ନର-ନାରୀ ମିଳନର ଏଇ ପବିତ୍ର ଆଦର୍ଶ ଆଜି ମଧ୍ୟ ଭାରତୀୟ ସମାଜ ଜୀବନକୁ ବିଧୃତ କରୁଅଛି ।

ସମସ୍ତ ଅନ୍ୟାୟ ଅତ୍ୟାଚାର ମଧ୍ୟରେ ରହି ଭାରତର ନାରୀ ଯୁଗେ ଯୁଗେ ପୁରୁଷକୁ ସାହାଯ୍ୟ କରି ଆସୁଅଛି । ସେ ସାହାଯ୍ୟ ଆଖିଦୃଷ୍ଟିଆ ନ ହେଲେ ବି ଉପେକ୍ଷଣୀୟ ନୁହେଁ । ହସ୍ତ କର୍ମରତ । କିନ୍ତୁ ଅଦୃଶ୍ୟ ହୃଦୟ ଯେ ରକ୍ତ ସଂଚାଳନ କରୁଛି ତାକୁ ନାହିଁ କରିହେବ ନାହିଁ । ସେଥିପାଇଁ ଆମେ ପୁରାଣରେ ଦେଖୁ ରାମଙ୍କର ସତ୍ୟରକ୍ଷା ପାଇଁ ସୀତା ମଧ୍ୟ ସମସ୍ତ ସୁଖସ୍ୱାଚ୍ଛନ୍ଦ୍ୟକୁ ତ୍ୟାଗକରି ରାମଙ୍କର ଅନୁଗାମିନୀ ହୋଇଛନ୍ତି । ତାଙ୍କ ଦୁଃଖର ଅଂଶ ଗ୍ରହଣ କରିଛନ୍ତି । ରାମଙ୍କର ଭୀରୁତା ଯୋଗୁହିଁ ତାଙ୍କୁ ପୁଣି ଅଗ୍ନିପରୀକ୍ଷାର ସମ୍ମୁଖୀନ ହେବାକୁ ପଡ଼ିଛି । ନିର୍ବାସିତ ଜୀବନ ଯାପନ କରିବାକୁ ପଡ଼ିଛି । ସୀତା ଇଚ୍ଛା କରିଥିଲେ ଅଯୋଧ୍ୟାରେ ରହି ରାଜ ଭୋଗ କରିପାରିଥାନ୍ତେ । ଅବଶ୍ୟ ପୁନର୍ବାର ବିବାହ

ନ କରି ସ୍ୱର୍ଣ୍ଣସୀତା ଗଢ଼ାଇ ରାମଚନ୍ଦ୍ର ତାଙ୍କପ୍ରତି ଯଥେଷ୍ଟ ସମ୍ମାନ ଦେଖାଇ ଯାଇଛନ୍ତି ।

କଳିର ପ୍ରଭାବ ହେତୁ ହେଉ କିମ୍ବା ଯେକୌଣସି କାରଣରୁ ହେଉ ନଳ ଦମୟନ୍ତୀଙ୍କୁ ଘୋର ବନ ମଧ୍ୟରେ ଏକାକିନୀ କରି ଛାଡ଼ି ଯାଇଥିଲେ । ତଥାପି ଦମୟନ୍ତୀ ତାଙ୍କୁ ଭୁଲି ନ ଥିଲେ ।

ସେପରି ଦୁଷ୍ମନ୍ତ ଗାନ୍ଧର୍ବ ବିବାହ ନାମରେ ଶକୁନ୍ତଳାର କୁମାରୀତ୍ୱ ନଷ୍ଟକରି ତାଙ୍କୁ ପ୍ରତ୍ୟାଖ୍ୟାନ କଲେ । ଯଦିଓ କବି, ପୁରୁଷର ଏଇ ଦୁର୍ବଳତାକୁ ଘୋଡାଇବାକୁ ଯାଇ ଋଷି ଦୁର୍ବାସାଙ୍କର ଅଭିଶାପର ଫଳ ବୋଲି ଶରଣ ନେଇଛନ୍ତି ।

ସୁଭଦ୍ରା ଅର୍ଜୁନଙ୍କର ରଥଚାଳନା କରି ତାଙ୍କୁ ସାହାଯ୍ୟ କରିଛନ୍ତି, ବଳରାମଙ୍କର ସୈନ୍ୟମାନଙ୍କୁ ପରାସ୍ତ କରିବାରେ । ଶୈବ୍ୟା ଦାନବୀର ହରିଶ୍ଚନ୍ଦ୍ରଙ୍କର ପଣ ରକ୍ଷା ପାଇଁ ଶିଶୁ ପୁତ୍ର ସହ ପଥର ଭିଖାରିଣୀ ହୋଇଛନ୍ତି ।

ପୁରାଣ କିମ୍ବା ଇତିହାସରୁ ନାରୀର ସୌନ୍ଦର୍ଯ୍ୟ ଭୋଗ ପାଇଁ ପୁରୁଷକୁ ଯୁଦ୍ଧ କରିବାର ଦେଖୁ । କିନ୍ତୁ ନାରୀ ପାଇଁ ପୁରୁଷର ଅନ୍ୟ କୌଣସି ସାହାଯ୍ୟର ବିଶେଷ ପରିଚୟ ମିଳେ ନାହିଁ ।

ଏତ ଗଲା ପୁରାଣଯୁଗର କଥା । ଆଧୁନିକ ଯୁଗରେ ଆମେ ଦେଖିବାକୁ ପାଉ ନିରକ୍ଷର ପଲ୍ଲୀବାଳା ଶାରଦାମଣିଙ୍କୁ । ସେ ସାଧକ ରାମକୃଷ୍ଣ ପରମହଂସଙ୍କୁ ଇଚ୍ଛା କରିଥିଲେ ଗୃହୀ କରି ପାରିଥାନ୍ତେ କିମ୍ବା ଘରେ ରହି ସୁଖୀ ହୋଇଥାନ୍ତେ । ଶାରଦା ଦେବୀ ତା' ନ କରି ରାମକୃଷ୍ଣଙ୍କ ପାଇଁ ସଂସାର ତ୍ୟାଗ କରିଛନ୍ତି ଏବଂ ସାଧନା ପଥରେ ତାଙ୍କର ସହାୟ ହୋଇ ଅଶେଷ ସେବା କରି ଯାଇଛନ୍ତି ତାଙ୍କର ଓ ତାଙ୍କ ଶିଷ୍ୟ ବର୍ଗଙ୍କର । ଗୋଟିଏ ନିରକ୍ଷରୀ ପଲ୍ଲୀବାଳା ପକ୍ଷରେ ଏହା କମ୍ ସାଧନାର କଥା ନୁହେଁ କି ! ଆଜି

ଗୋଟିଏ ଉଲ୍ଲେଖଯୋଗ୍ୟ ବିଷୟ ହେଉଛି, ପରମହଂସଙ୍କ ମୃତ୍ୟୁ ପରେ ହିନ୍ଦୁନାରୀ ଶାରଦା ଦେବୀ ହସ୍ତରୁ ଶଙ୍ଖା କାଢ଼ି ନ ଥିଲେ କିମ୍ବା ମସ୍ତକରୁ ସିନ୍ଦୁର ନିଭାଇ ନ ଥିଲେ, ରାମକୃଷ୍ଣଙ୍କ ନିର୍ଦ୍ଦେଶରେ । ଯୋଗୀ ରାମକୃଷ୍ଣଙ୍କ ଆତ୍ମା ଯେ ଅମର ଏ କଥା ଆମେ ହୁଏତ ବିଶ୍ୱାସ କରିପାରିବୁ ନାହିଁ । କିନ୍ତୁ ଶାରଦା ଦେବୀ ସେ କଥା ମର୍ମେ ମର୍ମେ ଅନୁଭବ କରିଥିଲେ । ଶାରଦା ଦେବୀ ଯୌବନର ଉପଭୋଗକୁ ତୁଚ୍ଛକରି ଅବତାର ରାମକୃଷ୍ଣଙ୍କଦ୍ୱାରା ଜନନୀ ରୂପରେ ପୂଜିତା ହୋଇଛନ୍ତି, ଦକ୍ଷିଣେଶ୍ୱର ସାଧନାପୀଠରେ ଶାରଦା ଦେବୀ ଗୃହିଣୀ ଓ ତପସ୍ୱିନୀ ରୂପରେ ରାମକୃଷ୍ଣଙ୍କର ସହାୟସ୍ୱରୂପା ଥିଲେ । କିନ୍ତୁ ଆଶ୍ଚର୍ଯ୍ୟ ବିଷୟ ଏହି ଯେ ବିବାହ ସମୟକୁ ତାଙ୍କର ବୟସ ମାତ୍ର ନଅବର୍ଷ । ଅନ୍ୟାନ୍ୟ ଦେଶରେ ଏବଂ ବର୍ତ୍ତମାନ ସମୟରେ ଏ ପ୍ରକାର ତ୍ୟାଗ କୌଣସି ନାରୀ ପକ୍ଷରେ ସମ୍ଭବ କି ?

ଏହିପରି ଆମ୍ଭେମାନେ ସମସ୍ତ ଭାରତୀୟ ମନୀଷୀମାନଙ୍କ ଜୀବନରେ ଦେଖି ଆସୁଛୁ । ଧରାଯାଉ ପୁଣି ମହାତ୍ମାଗାନ୍ଧିଙ୍କ ବିଷୟ । କସ୍ତୁରୀବାଈ ଇଚ୍ଛା କରିଥିଲେ ମହାତ୍ମାଙ୍କ ତ୍ୟାଗ କରି ପୁତ୍ରମାନଙ୍କ ସହିତ ସଂସାର ସୁଖ ଭୋଗ କରି ପାରିଥାନ୍ତେ । କିନ୍ତୁ ମହାତ୍ମାଗାନ୍ଧିଙ୍କ ସମସ୍ତ ନିର୍ଯ୍ୟାତନା ସେ ଅମ୍ଳାନ ବଦନରେ ସହ୍ୟ କରି ତାଙ୍କ ପଥର ପଥିକ ହୋଇଛନ୍ତି । ଏହା ମହାତ୍ମାଗାନ୍ଧିଙ୍କ ନିଜ ଜୀବନ ଚରିତରୁ ଜାଣିବାକୁ ପାଉଁ । ମହାତ୍ମାଗାନ୍ଧିଙ୍କ ପ୍ରଥମ ସାଧନାକ୍ଷେତ୍ର ଦକ୍ଷିଣ ଆଫ୍ରିକାରେ ସେ କସ୍ତୁରୀବାଈଙ୍କୁ ଯାହା କରିବାକୁ କହୁଥିଲେ, କସ୍ତୁରୀବାଈ ଧର୍ମଗତ ସଂସ୍କାରବଶତଃ ତାହା କରିବାକୁ କୁଣ୍ଠିତା ହୋଇଛନ୍ତି । କିନ୍ତୁ ପରେ ସେ ନିଜକୁ ଦୃଢ଼କରି, ଗାନ୍ଧିଙ୍କର ତ୍ୟାଗଭାବ ଗ୍ରହଣ କରିଥିଲେ । ଖାଲି ସେତିକି ନୁହେଁ, ସନ୍ତାନଗତ-ପ୍ରାଣା ଜନନୀ ସନ୍ତାନମାନଙ୍କଠାରୁ ଦୂରରେ ରହି ସମସ୍ତ ଧନ ସମ୍ପଦର

ମୋହ ତୁଟାଇ ସ୍ୱାମୀଙ୍କ ପଦାଙ୍କ ଅନୁସରଣ ପୂର୍ବକ ଅଶେଷ ଦୁଃଖ କଷ୍ଟ ସହ୍ୟ କରି ଜେଲରେ ଥାଇ, ଅମର ଲୋକକୁ ଯାତ୍ରା କଲେ । ମହାମାନବ ଗାନ୍ଧିଜୀଙ୍କ କୋଳରେହିଁ ତାଙ୍କର ଶେଷନିଃଶ୍ୱାସ ନିର୍ଗତ ହୋଇ । ସ୍ୱାମୀ କୋଳରେ ମସ୍ତକ ରଖି ମୃତ୍ୟୁବରଣ ହିନ୍ଦୁନାରୀ-ମାନେହିଁ କାମନା କରିଥାନ୍ତି । ଯେଉଁ ମହାମାନବଙ୍କର ଦର୍ଶନପାଇଁ କୋଟି କୋଟି ମାନବ ଲାଳାୟିତ ଥିଲେ, ତାଙ୍କଠାରୁ ଏ ସମ୍ମାନ ପାଇବା କମ ସୌଭାଗ୍ୟର କଥା ନୁହେଁ । ମହାମାନବ ଗାନ୍ଧିଜୀଙ୍କୁ ସ୍ମରଣ କଲାବେଳେ କସ୍ତୁରବା'ଙ୍କ କଥା ମଧ୍ୟ ସ୍ୱତଃ ମନରେ ଉଦିତ ହୁଏ ।

ଅଧ୍ୟାତ୍ମ୍ୟଯୋଗୀ ଅରବିନ୍ଦ, ରାଜନୈତିକ କାରଣଯୋଗୁ ସ୍ୱଦେଶ ଛାଡ଼ି ପଣ୍ଡିଚେରୀରେ ଆଶ୍ରୟ ଗ୍ରହଣ କଲେ । ସେଠାରେ ଅବସ୍ଥାନ କରୁଥିବା ସମୟରେ ଭଗବତ୍ ପ୍ରେରଣା ପ୍ରାପ୍ତ ହୋଇ ଆଶ୍ରମ ଗଢ଼ି ରହିଲେ । ତାଙ୍କ ସ୍ତ୍ରୀ ମୃଣାଳିନୀ ଦେବୀ ଏ ସମ୍ବାଦ ପାଇ ନିଜକୁ ଋଷି ଅରବିନ୍ଦଙ୍କ ଉପଯୁକ୍ତ କରିବା ପାଇଁ ଲାଗି ପଡ଼ିଲେ । ଅର୍ଥାତ୍ ଦକ୍ଷିଣେଶ୍ୱର ଆଶ୍ରମରେ ରହି ସ୍ୱାମୀ ମୁକ୍ତାନନ୍ଦଙ୍କଠାରୁ ଯୋଗ ଶିକ୍ଷାକଲେ । ତତ୍ପରେ ବେଲୁଡ଼ ମଠରେ ରାମକୃଷ୍ଣ ପରମହଂସଙ୍କ ଶିଷ୍ୟ ସ୍ୱାମୀ ଶାରଦାନନ୍ଦଙ୍କ ଆଶ୍ରୟରେ ଆଧ୍ୟାତ୍ମିକ ପାଇଁ ଚେଷ୍ଟିତା ଥିଲେ । ତା'ପରେ ଅରବିନ୍ଦଙ୍କ ଆଶ୍ରମରେ ନିଜ ପାଇଁ ସ୍ଥାନ କରି ନେଇଥାନ୍ତେ । ବିଧି କିନ୍ତୁ ବାମ ହେଲା । ସାଧନାରେ ସିଦ୍ଧି ଲାଭ କରିବା ପୂର୍ବରୁ ମୃଣାଳିନୀ ଦେବୀ କାଳ କବଳରେ ପତିତ ହେଲେ ।

ତା'ପରେ ଆମେ ଦେଖୁ ନବଦ୍ୱୀପର ପ୍ରସିଦ୍ଧ ପଣ୍ଡିତ ବିଶୁଆ ରାମନାଥଙ୍କ ସ୍ତ୍ରୀଙ୍କୁ, ଯେ କି ଏକାନ୍ତ ମନରେ ସ୍ୱାମୀ ସେବା କରି ଯାଇଛନ୍ତି ଅର୍ଥ ସମ୍ପଦକୁ ତୁଚ୍ଛକରି । ଦୀନ ରାମନାଥଙ୍କ ସ୍ତ୍ରୀ

ଶଙ୍ଖା ଅଭ୍ୟାସରେ ହାତରେ ସୂତା ବାନ୍ଧି ସଧବାତ୍ୱ ବଜାୟ ରଖିଥିଲେ । ଦିନେ ସେ ଗଙ୍ଗା ନଦୀରେ ବସନ ଧୋଉଛନ୍ତି ଏହି ସମୟରେ ନବଦ୍ୱୀପର ରାଣୀ, ପରିଚାରିକା ଗହଣରେ ଆସିଲେ ସ୍ନାନ କରିବାକୁ । ଗୋଟିଏ ଉଦ୍ଧତା ଦାସୀ କହିଲା, "କାଲୋ, ତତେ କ'ଣ ଦିଶୁନାହିଁକି, ପାଣି ପଡ଼ିଯିବ ?" ତା'ପରେ ରମନାଥଙ୍କ ସ୍ତ୍ରୀ ପଚାରିଲେ, "ପାଣି ପଡ଼ିବ ବୋଲି ମୁଁ କ'ଣ ଲୁଗା କାଚିବି ନାହିଁ ?" ସେଇଠୁ ଦାସୀ କହିଲା, "ହାତରେ ସୂତା ବାନ୍ଧି ବ୍ରାହ୍ମଣୀର ଗୁମର କେତେ ! ଆଜି ଯଦି ସେମିତି କାନ୍ଧ ହୋଇଥାନ୍ତୁ ।"

ରମନାଥଙ୍କ ବୁଦ୍ଧିମତୀ ସ୍ତ୍ରୀ ଉତ୍ତରରେ କହିଲେ, "ହଁ, ଏଇ ସୂତା ଲାଗି ତ ନବଦ୍ୱୀପର ସମ୍ମାନ ରହିଛି ।" ଏହି ଉକ୍ତିରୁ ଜଣାପଡ଼େ ସ୍ୱାମୀଙ୍କ ପାଣ୍ଡିତ୍ୟ ସମ୍ବନ୍ଧରେ ସେ ଅଜ୍ଞ ନ ଥିଲେ । ଧନ ଦୌଲତ ଲାଳସା ନ ରଖି ସେ ପଣ୍ଡିତ ସ୍ୱାମୀଙ୍କର ଉପଯୁକ୍ତ ପତ୍ନୀର ଆସନ ଗ୍ରହଣ କରିପାରିଥିଲେ ।

ଯା'ପରେ ଆମେ ଜ୍ୱଳନ୍ତ ଉଦାହରଣ ପାଉ ଶ୍ରୀ ମୋତିଲାଲ ନେହେରୁଙ୍କ ସ୍ତ୍ରୀ ଶ୍ରୀମତୀ ସ୍ୱରୂପାରାଣୀ ନେହେରୁଙ୍କ ଠାରୁ, ଯେ କି ସ୍ୱେଚ୍ଛାରେ ସୁଖ ସମୃଦ୍ଧିର ଚରମସୀମାରୁ ଓହ୍ଲାଇ ଆସି ଦୁଃଖ ନିର୍ଯ୍ୟାତନାକୁ ବରଣ କରି ନେଇଥିଲେ ଏକାଧାରରେ ଭାରତମାତାଙ୍କ ସ୍ୱାଧୀନତା ଓ ସ୍ୱାମୀଙ୍କ ସହଯୋଗ ପାଇଁ ।

ସ୍ୱାଧୀନ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁଙ୍କର ପତ୍ନୀ କମଳା ନେହେରୁ ମଧ୍ୟ ଦୁଃଖ କଷ୍ଟ ବରଣ କରି ନେଇଛନ୍ତି ଅକୁଣ୍ଠିତ ଚିତ୍ତରେ । ଧନୀବଧୂର କାରାବରଣ ଓ ଖଦଡ ପଲଙ୍କ ତେଜି ଭୂମିଶଯ୍ୟନ, ସାଧାରଣଙ୍କ ଦୃଷ୍ଟିରେ ସାମାନ୍ୟ ହେଲେହେଁ, କମଳାଙ୍କ ପକ୍ଷରେ ତାହା କଷ୍ଟସ୍ୟ କ୍ଲେଶଦାୟକ

ହୋଇଥିବ । ତେଣୁ ତାଙ୍କର ସ୍ୱାସ୍ଥ୍ୟଭଙ୍ଗ ହେଲା । ଅକାଳରେ ସେ ଝଡ଼ି ପଡ଼ିଲେ । କୋଟିପତି ମୋତିଲାଲ ତାଙ୍କର ଉତ୍ତମ ସ୍ୱାସ୍ଥ୍ୟରେ ମୁଗ୍ଧ ହୋଇ ତାଙ୍କୁ ବଧୂ ରୂପରେ ବରଣ କରି ଆଣିଥିଲେ । କେବଳ ଜବାହରଙ୍କ ପାଇଁ ସେ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇଥିଲେ । ସେଥିପାଇଁ ଆମେ ସ୍ୱାଧୀନ ଭାରତର ସର୍ବପ୍ରଥମ କର୍ଣ୍ଣଧାର ପଣ୍ଡିତ ନେହେରୁଙ୍କର ଆତ୍ମଜୀବନୀର ଉତ୍ସର୍ଗ ପତ୍ରରେ ଦେଖୁଁ—'କମଳାଙ୍କୁ, ଯେ ଆଉ ନାହିଁ' । ଏଇଥିରୁ ଆମେ ଜାଣୁ କମଳାଙ୍କର ପ୍ରଭାବ ନେହେରୁଙ୍କ ଉପରେ କେତେ ଥିଲା ଓ ଅଛି ।

ସତ୍ୟାଲୋକ-ସନ୍ଧାନୀ ଭଗବାନ ବୁଦ୍ଧଙ୍କ ଜୀବନରେ ମଧ୍ୟ ଆମେ ଏହାହିଁ ଦେଖୁ । ଦୁଃଖ—ଶୋକ—ସନ୍ତାପିତ ମାନବ ଜୀବନରେ ବିତୃଷ୍ଣା ଆସିବାରୁ ସେ ଅର୍ଦ୍ଧାଙ୍ଗିନୀ ଗୋପାଙ୍କୁ ନ ଜଣାଇ ନିର୍ଜନ ନିଶୀଥରେ ଗୃହ ପରିତ୍ୟାଗ କରିଥିଲେ । କିନ୍ତୁ ଗୋପା ରାଜ-ପ୍ରାସାଦରେ ରହି ମଧ୍ୟ ସିଦ୍ଧାର୍ଥଙ୍କୁ ଭୁଲିଯାଇ ନାହାନ୍ତି । ଜ୍ଞାନାଲୋକ ପ୍ରାପ୍ତି ପରେ ବୁଦ୍ଧ ଯେତେବେଳେ ଫେରିଲେ, ସେ ଐଶ୍ୱର୍ଯ୍ୟର ମୋହକୁ ଏଡ଼ାଇ ତାଙ୍କର ଶରଣ ପଶି ସଂଘର ଆଶ୍ରୟ ନେଲେ ଓ ବୁଦ୍ଧଙ୍କର ଅମୃତମୟ ବାଣୀ, କାମନା ଓ ତୃଷ୍ଣାରେ ଅବଦ୍ଧ ମାନବ ସମାଜରେ ପ୍ରଚାରିତ କରିବାରେ ମଧ୍ୟ ସାହାଯ୍ୟ କରିଥିଲେ ।

ଭାରତର ସମୁଜ୍ଜ୍ୱଳ ଇତିହାସରେ ଏହିପରି ଶତ ଶତ ଦୃଷ୍ଟାନ୍ତ ଦେଖିବାକୁ ମିଳେ । ଋଷି ଟଲଷ୍ଟୟଙ୍କ ଜୀବନର ଦୁଃଖପୂର୍ଣ୍ଣ ପରିସମାପ୍ତି ଏ ଦେଶରେ ଘଟେନାହିଁ । ସୁସଭ୍ୟ ଆମେରିକା ସଭାପତି ଲିଙ୍କନ୍ ଯେପରି ସ୍ତ୍ରୀର ନାନା ପ୍ରକାର ନିର୍ଯ୍ୟାତନା ସହ୍ୟ କରି ଯାଇଛନ୍ତି, ତାହା ଏ ଦେଶର ଅଶିକ୍ଷିତା ନାରୀଠାରୁ ମଧ୍ୟ ସମ୍ଭବ ନୁହେଁ । ହୁଏତ ଲିଙ୍କନଙ୍କର କୌଣସିପ୍ରକାର ଦୁର୍ବଳତା ଥିଲା ।

ତାଙ୍କ ଦେଶରେ ଛାଡ଼ପତ୍ର ପ୍ରଥା ଥିଲେ ସୁଦ୍ଧା ସେ କାହିଁକି ସ୍ତ୍ରୀଙ୍କୁ ପରିତ୍ୟାଗ କରି ନ ଥିଲେ ।

ଯେଉଁ ପୁରୁଷମାନେ ବୈଦିକ ଶ୍ଳୋକ ରଚନାକରି ବିବାହର ଆଦର୍ଶ ସମ୍ବନ୍ଧରେ ସମାଜ ଜୀବନକୁ ମଧୁର ଓ ଉନ୍ନତତର କରିବାରେ ନାରୀ ଜୀବନକୁ ନିୟନ୍ତ୍ରିତ କରିଥିଲେ, ସେଇ ଜ୍ଞାନବାନ୍ ପୁରୁଷମାନଙ୍କ ବିଷୟରେ ହିଁ ହତାଶ ହେବାକୁ ପଡ଼େ । ଆମେମାନେ ଦେଖିବାକୁ ପାଉନାହୁଁ ଗୋଟିଏ ହେଲେ ପୁରୁଷକୁ, ଯେ କି ସ୍ତ୍ରୀପାଇଁ କୌଣସି ପ୍ରକାର ତ୍ୟାଗ ସ୍ୱୀକାର କରିଛି ।

'କରି କରାଉ ଥାଏ ମୁହିଁ', ଭାଗବତର ଏହି ବାଣୀକୁ ସାର୍ଥକ କରିଛି ହିନ୍ଦୁଲଳନା । ନେତାମାନେ ନିଜେ କୌଣସି କାର୍ଯ୍ୟ କରନ୍ତି ନାହିଁ, କରାଇଥାନ୍ତି । ହିନ୍ଦୁନାରୀ ସେହିପରି ନିଜେ ନ କରି ପୁରୁଷର କାର୍ଯ୍ୟରେ ମନ ପ୍ରାଣ ଦେଇ ସହଯୋଗ କରି ଆସିଛି । ହୁଏତ ଏ ପ୍ରକାର ଆନ୍ତରିକ ସାହାଯ୍ୟ ନ ପାଇ ସ୍ତ୍ରୀର ଅତ୍ୟାଚାରରେ ଜର୍ଜରିତ ହୋଇ ସ୍ୱାମୀ ବ୍ୟର୍ଥକାମ ହୋଇଥାନ୍ତେ, ଯେପରି ଏ ଦେଶର ଅନେକ ସ୍ତ୍ରୀ ସ୍ୱାମୀର ଅତ୍ୟାଚାର ଓ ଅଧିକାରର ଜ୍ୱାଳାରେ ଆତ୍ମହତ୍ୟା କରନ୍ତି, କିମ୍ବା ଶୁଖି ଶୁଖି ମଉଳି ପଡ଼ନ୍ତି ।

ପାଶ୍ଚାତ୍ୟ ଭାବରେ ଅନୁପ୍ରାଣିତ ବର୍ତ୍ତମାନ ତରୁଣଗଣ ବଧୂ ନିର୍ବାଚନ ନେଇ ପିତାମାତାଙ୍କ ଉପରେ ଅସନ୍ତୁଷ୍ଟ । ସେମାନେ ନିଜେ ନିଜର ସହଧର୍ମିଣୀ ବାଛିବାରେ ଅଗ୍ରସର ହେଉଛନ୍ତି । ସେମାନଙ୍କ ଜୀବନର ସାଫଲ୍ୟ କ'ଣ ବୁଦ୍ଧ, ରାମକୃଷ୍ଣ, ଗାନ୍ଧିଙ୍କଠାରୁ ଅଧିକ ହେବ ? ଏପରି ବିରାଟ ପୁରୁଷମାନେ ତ ସେମାନଙ୍କର ସ୍ତ୍ରୀମାନଙ୍କୁ ନିଜେ ବାଛି ନ ଥିଲେ !



# ବିଶାଖା ମୃଗାରମାତା

ହେମଲତା ମାନସିଂହ

ଶ୍ରାବସ୍ତିପୁର ନଗରରେ ପୂର୍ବାରାମ ନାମକ ଏକ ଅତିବିସ୍ତୃତ, ବିଚିତ୍ର ଓ ସୁସଜ୍ଜିତ ଉଦ୍ୟାନବାଟିକା ଥିଲା । କିମ୍ବଦନ୍ତୀ ଏହିଯେ, ଏହି ନଗରୀର ବିପୁଳବିତ୍ତଶାଳିନୀ, ସାଧ୍ୱୀ, ଦାନଶୀଳା ମହିଳା ବିଶାଖା ମୃଗାରମାତା ପ୍ରଭୂତ ଅର୍ଥବ୍ୟୟ କରି ଏହି ଉଦ୍ୟାନବାଟିକା ପ୍ରସ୍ତୁତ କରାଇଥିଲେ । ତାହାଙ୍କର ପିତୃମାତୃ ଦତ୍ତ ନାମ ଥିଲା ବିଶାଖା, କିନ୍ତୁ କୋଶଳ ରାଜ୍ୟର ପ୍ରଜାମାନେ, କି ଧନୀ କି ଦୀନ ଦୁଃଖୀ, ଯେଉଁମାନଙ୍କର ସେ ମାତୃସ୍ୱରୂପା ଥିଲେ, ସେମାନେ ତାଙ୍କୁ ବିଶାଖା-ମୃଗାର ମାତା ଡାକୁ ଥିଲେ । କୋଶଳ-ରାଜ୍ୟର ପ୍ରଧାନମନ୍ତ୍ରୀ ମୃଗଧର, ବିଶାଖାଙ୍କର ଶ୍ୱଶୁର । ବଂଶମର୍ଯ୍ୟାଦାରେ ବିଶାଖାଙ୍କର ବଂଶ ନ୍ୟୂନ ହେଲେହେଁ, ତାହାଙ୍କର ବିଚକ୍ଷଣ ବୁଦ୍ଧିମତ୍ତା, ଅପୂର୍ବ କର୍ମ କୌଶଳ, ସର୍ବ କାର୍ଯ୍ୟରେ ନିପୁଣତା ଓ ଅସାମାନ୍ୟ ରୂପଲାବଣ୍ୟ ଦେଖି ସଂସାରାଭିଜ୍ଞ ମୃଗଧର ତାଙ୍କୁ ପୁତ୍ରବଧୂ କରି ଘରକୁ ଆଣିଥିଲେ ଏବଂ ନିଜର କନ୍ୟାପରି ଅପରିସୀମ ସ୍ନେହରେ ତାଙ୍କୁ ପାଳନ କରି ମା ବୋଲି ସମ୍ବୋଧନ କରୁଥିଲେ । ଏଥିପାଇଁ ତାଙ୍କ

ନାମ ମୃଗାର ମାତା ବା ମୃଗଧର ମାତା ହୋଇଥିଲା । ରାଜକାର୍ଯ୍ୟ ପରିଚାଳନାରେ ସଦା ବ୍ୟସ୍ତ, କ୍ଲାନ୍ତ, ଚିନ୍ତାକୁଳ, ତଥା ଅନ୍ୟମନସ୍କ ମୃଗଧରଙ୍କୁ ଏହି ମାତୃସ୍ନେହପ୍ରବଣା ବଧୂ, ପୁତ୍ରପରି ଯତ୍ନ ଓ ସେବା କରନ୍ତି ଏବଂ ପ୍ରୟୋଜନୀୟ ଦ୍ରବ୍ୟ ପୂର୍ବରୁ ସଂଗ୍ରହ କରି ମାଗିବା ପୂର୍ବରୁ ଯୋଗାଇ ଦିଅନ୍ତି । ତାଙ୍କର ଏହି ଅମ୍ବଭୋଳା ଶ୍ୱଶୁରଙ୍କୁ ସେ ଦେବତା ପରି ମଧ୍ୟ ଭକ୍ତି କରୁଥିଲେ । ବଧୂ ବିଶାଖାଙ୍କର ଶୁଭବୁଦ୍ଧି ଉପରେ ମୃଗଧରଙ୍କ ଏପରି ପ୍ରଗାଢ଼ ବିଶ୍ୱାସ ଥିଲା ଯେ ସେ କୂଟ ରାଜନୈତିକ ବିଷୟରେ ମଧ୍ୟ ତାହାଙ୍କର ପରାମର୍ଶ ଆନନ୍ଦିତ ହୋଇ ଗ୍ରହଣ କରୁଥିଲେ । ଧାର୍ମିକପ୍ରବର କୋଶଳରାଜ ପ୍ରସେନଜିତ୍ ପ୍ରବୀଣ ବିଶ୍ୱସ୍ତ ମନ୍ତ୍ରୀଙ୍କର ପୁତ୍ରବଧୂର ମଧୁର ସ୍ୱଭାବ, ସଦ୍‌ବୁଦ୍ଧି ଓ ପ୍ରତ୍ୟୁତ୍ପନ୍ନମତିତ୍ୱ ଦେଖି ଚମତ୍କୃତ ହେଉଥିଲେ । ଆଦର କରି ବିଶାଖାଙ୍କୁ ଭଉଣୀ ବୋଲି ଡାକୁଥିଲେ ଓ ଭଉଣୀପରି ମର୍ଯ୍ୟାଦା କରୁଥିଲେ । ଥରେ ରାଜା ଅତ୍ୟନ୍ତ ଅସୁସ୍ଥ ହୋଇ ପଡ଼ିଲେ । ତାଙ୍କର ସେବାପାଇଁ ନିପୁଣ ଶୁଶ୍ରୂଷାକାରୀ ନ ମିଳିବାରୁ, ସେ ତାଙ୍କର ଏହି 'ଭଗିନୀ'ଙ୍କୁ ସମ୍ଭ୍ରମରେ ଆହ୍ୱାନ କରି ବିଶ୍ୱସ୍ତ ସେବାର ଭାର ଦେଇଥିଲେ । ବିଶାଖା ଅତୁଳନୀୟ ଯତ୍ନସହକାରେ ତାଙ୍କର ସେବା ଦ୍ୱାରା ରାଜାଙ୍କର ରୋଗ ଯନ୍ତ୍ରଣାର ଲାଘବ କରିଥିଲେ ଏବଂ ସେହି ସମୟରେ ମଝିରେ ମଝିରେ ସେ ବିଶାଖାଙ୍କଠାରୁ ରାଜ୍ୟର ଗୋପନୀୟ ସଂବାଦ ମଧ୍ୟ ପାଉଥିଲେ । ରାଜା ରୋଗଶଯ୍ୟାରେ ଥାଇ ମଧ୍ୟ ସେ ସମସ୍ତର ଯଥାଯଥ ପ୍ରତିକାର କରୁଥିଲେ । ବିଶାଖା ନିର୍ଲୋଭ, ସଚ୍ଚରିତା ଓ ନମ୍ର ଥିବାରୁ ଏବଂ କାହାର ଅନିଷ୍ଟ ଚିନ୍ତା କରୁ ନ ଥିବାରୁ କୋଶଳ ରାଜ୍ୟରେ ତାଙ୍କର ବିଶେଷ ପ୍ରତିପତ୍ତି ଥିଲା । କିନ୍ତୁ ଏହି ପ୍ରତିପତ୍ତିକୁ ସେ କେବେ ସ୍ୱୀୟ ସ୍ୱାର୍ଥସାଧନ ପାଇଁ ବ୍ୟବହାର କରୁ ନ ଥିଲେ ।

ବିଶାଖା, ବୁଦ୍ଧଙ୍କପ୍ରତି ଅତିଶୟ ଭକ୍ତିମତୀ ଥିଲେ । ତାଙ୍କର ଅଭ୍ୟର୍ଥନା ପାଇଁ ଏତେ ଅର୍ଥବ୍ୟୟ କରି ଶ୍ରାବସ୍ତୀ ପୁରରେ ସେ ପୂର୍ବୋକ୍ତ ମନୋରମ ଉଦ୍ୟାନବାଟିକା ପ୍ରସ୍ତୁତ କରାଇଥିଲେ । ଯେତେବେଳେ ଭଗବାନ ବୁଦ୍ଧ ଶ୍ରାବସ୍ତୀ ପୁରକୁ ଆସୁଥିଲେ ସେତେବେଳେ ସେ ଜେତବନସ୍ଥ ଅନାଥପିଣ୍ଡଦାରାମରେହିଁ ସାଧାରଣତଃ ରହୁଥିଲେ; ଲୋକାଳୟଠାରୁ ଦୂରରେ । କିନ୍ତୁ ପୂତଶୀଳା ବିଶାଖାଙ୍କର ନିମନ୍ତ୍ରଣକୁ ଉପେକ୍ଷା କରି ନ ପାରି ବୁଦ୍ଧ ଭିକ୍ଷୁସଙ୍ଘସହ ପୂର୍ବାରାମରେ ଆସି ମଝିରେ ମଝିରେ ଅବସ୍ଥାନ କରନ୍ତି । ସେ ସମୟରେ କୋଳାହଳ ଦୂର କରିବାପାଇଁ ବିଶାଖା ଉଦ୍ୟାନବାଟିକାର ଏକ କୋଣରେ ପରିଚାରିକାପରି ଅବସ୍ଥାନକରି ପ୍ରଭୁ ବୁଦ୍ଧଙ୍କ ସେବା କରୁଥିଲେ । ବିଶାଖା ବୌଦ୍ଧଧର୍ମର ସୁଦୃଢ଼ ସ୍ତମ୍ଭସ୍ୱରୂପ ଥିଲେ । ସେ ବୌଦ୍ଧଧର୍ମର ପ୍ରଚାର ଉଦ୍ଦେଶ୍ୟରେ ଅଜସ୍ର ଅର୍ଥବ୍ୟୟ କରିଥିଲେ । ବୌଦ୍ଧ ଧର୍ମର ଇତିହାସରେ ତାଙ୍କର ନାମ ଚିରସ୍ମରଣୀୟ ହୋଇଅଛି ।

ଥରେ ଭଗବାନ ବୁଦ୍ଧ ପୂର୍ବାରାମରେ ଭିକ୍ଷୁଗଣଙ୍କ ସହିତ ଅବସ୍ଥାନ କରୁଅଛନ୍ତି, ମଧ୍ୟାହ୍ନ ସମୟରେ ଆଲୁଳାୟିତ କୁନ୍ତଳା ସିକ୍ତବସ୍ତ୍ରପରିହିତା ବିଶାଖା ଆସି ବୁଦ୍ଧଦେବଙ୍କୁ ପ୍ରଦକ୍ଷିଣ କରି ପ୍ରଣାମାନ୍ତର ଗୋଟିଏ ପାର୍ଶ୍ୱରେ ଉପବିଷ୍ଟ ହେଲେ । ଧ୍ୟାନ ସ୍ତିମିତ ଲୋଚନ ପ୍ରଭୁ ଥରେ ନିମିଷକପାଇଁ ଚକ୍ଷୁ ଉନ୍ମୀଳନ କରି ସୁଦୂର ଶୂନ୍ୟ ଦିଗକୁ ଚାହିଁ ସ୍ନେହମଧୁର କଣ୍ଠରେ ଜିଜ୍ଞାସା କଲେ—, "ବିଶାଖା ମୃଗାର ମାତା, ଏଇ ମଧ୍ୟାହ୍ନ ସମୟରେ ସିକ୍ତବସ୍ତ୍ରରେ ଓ ସିକ୍ତକେଶରେ ତମର ଏଠାକୁ ଆସିବାର କାରଣ କଣ ?" ବିଶାଖା ଉଦ୍ୟତ ରୁଦ୍ଧବାଷ୍ପର ବେଗ ଅତି କଷ୍ଟରେ ସଂଯତ କରି ଛଳଛଳ ନେତ୍ରରେ କହିଲେ, "ଭନ୍ତେ, ଆଜ ମୋର

ଏକମାତ୍ର ପୌତ୍ର ଆମ୍ଭମାନଙ୍କୁ ଛାଡ଼ି ପରଲୋକ ଗମନ କରିଛି, ତାହାର ଅନ୍ତ୍ୟେଷ୍ଟି କ୍ରିୟା ସମ୍ପାଦନ କରି, ସ୍ନାନାନ୍ତେ ଆପଣଙ୍କ ଦୁଃଖହରଣ ପାଦମୂଳରେ ଶାନ୍ତିଲାଭ ପାଇଁ ଆସିଲି, ଅନ୍ତଃପୁରକୁ ଯିବାକୁ ଇଚ୍ଛା ହେଲା ନାହିଁ ।”

ଏହି କଥା ଶୁଣି ବୁଦ୍ଧଦେବ କିଛିକ୍ଷଣ ନୀରବ ରହିଲେ, ପରେ ଧୀରେ ଧୀରେ ଜିଜ୍ଞାସା କଲେ, “ବିଶାଖା ମୃଗାରମାତା, ତୁମେ କ’ଣ ତୁମର ପୌତ୍ରକୁ ଅତ୍ୟନ୍ତ ସ୍ନେହ କରୁଥିଲ ?”

ବିଶାଖା—“ଭନ୍ତେ, ହଁ, ସେ ମୋର ପ୍ରାଣ ଅପେକ୍ଷା ଅଧିକ ପ୍ରିୟ ଥିଲା ।”

ବୁଦ୍ଧ, “ବିଶାଖା ମୃଗାରମାତା, ଏହି ଶ୍ରାବସ୍ତିପୁରରେ ଯେତେ ଅଧିବାସୀ ଅଛନ୍ତି ସେମାନେ ସମସ୍ତେ ତମର ପୌତ୍ରପୌତ୍ରୀ ହୁଅନ୍ତୁ, ତମେ କ’ଣ ତାହା ଚାହଁ ?

ବିଶାଖା—ଭନ୍ତେ, ହଁ, ମୁଁ ତାହା ଚାହେଁ । ସେମାନଙ୍କ ସ୍ନେହଲାଭକରି ମୁଁ କୃତାର୍ଥ ହେବି ।

ବୁଦ୍ଧ—“ବିଶାଖା ମୃଗାରମାତା, ଏହି ଜନବହୁଳ ରାଜଧାନୀରେ ପ୍ରତ୍ୟହ କେତେଜଣ ଲୋକ ପ୍ରାଣତ୍ୟାଗ କରନ୍ତି ?”

ବିଶାଖା—ଭନ୍ତେ, ହୁଏତ କେଉଁଦିନ ବାରଜଣ, କେଉଁଦିନ ଦଶଜଣ, କେଉଁଦିନ ଆଠଜଣ ଏବଂ କେଉଁଦିନ ଜଣେବି ମରେ ନାହିଁ ।

ବୁଦ୍ଧ—ବେଶ୍, ବିଶାଖା ମୃଗାରମାତା, ଏକ୍ଷଣି ଯଦି ଶ୍ରାବସ୍ତିପୁରର ସମସ୍ତ ଅଧିବାସୀ ତମର ପୌତ୍ରପୌତ୍ରୀ ହୁଅନ୍ତି, ତେବେ ତମେ କେତେବେଳେ ସିକ୍ତ ବସ୍ତ୍ର ଓ ସିକ୍ତ କେଶ ଶୁଖାଇବାକୁ ସମୟ ପାଇବ ?

ତୀକ୍ଷ୍ଣ ବୁଦ୍ଧିଶାଳିନୀ ବିଶାଖା ଏଇ ଅତର୍କିତ ଓ ଅପ୍ରତ୍ୟାଶିତ ପ୍ରଶ୍ନରେ ଚକିତ ହେଲେ ଏବଂ ମୂହୂର୍ତ୍ତିକ ମଧ୍ୟରେ ସମସ୍ତ ବୁଝିପାରିଲେ । କିଛୁକ୍ଷଣ ନୀରବ ରହି ନତଶିରରେ ସ୍ୱପ୍ନୋତ୍ତ୍ତର ଧୀରେ ଧୀରେ କହିଲେ, "ଭନ୍ତେ, ସତ୍ୟରେ ସେ ଅବସ୍ଥା ବଡ଼ ଅସୁନ୍ଦର ହେବ । ଅବଶ୍ୟମ୍ଭାବୀ ଏହି ସମ୍ଭାବନା ଜାଣି ମଧ୍ୟ ସଦ୍ୟ-ବିୟୋଗବିଧୁର ମୋର ମାତୃହୃଦୟ ସ୍ନେହଲାଭପାଇଁ ଲାଳାୟିତ ହେଉଥିଲା ।"

ଶାନ୍ତ କରୁଣ ଦୃଷ୍ଟିରେ ବିଶାଖାର ତାପଦଗ୍ଧ କ୍ଷୁବ୍ଧ ହୃଦୟକୁ ଶୀତଳ ଶାନ୍ତିଧାରାରେ ଅଭିସିଞ୍ଚିତ କରି ଭଗବାନ ଶ୍ରୀବୁଦ୍ଧ କହିଲେ, "ତେବେ ଦେଖ, ବିଶାଖା ମୃଗାରମାତା, ଯଦି ତମର ଏକ ଶତ ପ୍ରିୟଜନ ଥାନ୍ତି, ତେବେ ତମର ଏକଶତ ଦୁଃଖ, ଯଦି ନବେଟି ପ୍ରିୟଜନ ଥାନ୍ତି, ତେବେ ତମର ନବେଟି ଦୁଃଖ, ଯେବେ ଅଶୀଜଣ ପ୍ରିୟଜନ ଥାନ୍ତି, ତେବେ ଅଶୀଟି ଦୁଃଖ, ଏହିପରି ଯଦି ଗୋଟିଏ ପ୍ରିୟଜନ ରହେ, ତେବେ ଗୋଟିଏ ଦୁଃଖ ରହିବ । ଆଉ, ଯଦି କେହି ପ୍ରିୟଜନ ନ ରହନ୍ତି ତେବେ ତମର କୌଣସି ଦୁଃଖ ରହିବନି । ଯାହାର ଯେଉଁଥିରେ ଆସକ୍ତି ନାହିଁ, ତାହାର ସେଥିପାଇଁ କୌଣସି ଦୁଃଖଶୋକ ରହିବ ନାହିଁ । ମମତ୍ୱହିଁ ଯେତେ ଦୁଃଖର ମୂଳ । ଶୋକ, ଅଶ୍ରୁ, ଆଘାତ, ପ୍ରତିଘାତ, ପ୍ରଭାବ, ପରାଭବ, ପ୍ରିୟତା ଏ ସମସ୍ତହିଁ ଦୁଃଖର ସ୍ୱରୂପ । ଦୁଃଖଠାରୁ ନିଷ୍କୃତି ପାଇବାକୁ ହେଲେ ଅନାସକ୍ତ ରହିବା ପ୍ରୟୋଜନ ଏବଂ ତାହା ଚେଷ୍ଟାସାପେକ୍ଷ ।" ଏହା କହି ଭଗବାନ ବୁଦ୍ଧ ନୀରବ ହେଲେ ।

ତତ୍‌ପରେ ବିଶାଖା ଋଜୁ ହୋଇ ବସି ମାଟିକୁ ଚାହିଁ ଅବିଚଳିତ କଣ୍ଠରେ କହିଲେ, "ଭନ୍ତେ, ଏହା ଏକାନ୍ତ ସତ୍ୟ ।"

ଉନ୍ମୁକ୍ତ ଦ୍ୱାରଦେଇ ନୀଳ ଆକାଶକୁ ଚାହିଁ, ଯେପରି ସୁଦୂର ମହାଶୂନ୍ୟର ରହସ୍ୟ ଗ୍ରହଣ କରୁକରୁ, ଶରତ୍‌ପ୍ରସନ୍ନମୁଖ ଭଗବାନ ଏହି ଅମୃତମୟୀ ବାଣୀ ଉଚ୍ଚାରଣ କଲେ—

ଶୋକର ଆଗାର ଏହି ସଂସାର ସମୁଦ୍ରେ, ଘୋରେ
ପ୍ରିୟଜନେ ଦେଇ ବିସର୍ଜନ,
ଗୃହ ଦିଗ ଶୂନ୍ୟ ଦେଖି ପ୍ରେମର ନିଗଡ଼େ ବନ୍ଧି
କରେ ଜୀବ କେତେହିଁ କ୍ରନ୍ଦନ ।
ତୁଚ୍ଛ ଏହି କ୍ଷୁଦ୍ର ପ୍ରେମ ପରିହରି ଆଉ କେବେ
ନ ଜଡ଼ାଇ ମାୟାର ବନ୍ଧନେ
ଅଶେଷ ଯତନେ କରି ଅନବଦ୍ୟ ଶ୍ରେୟୋଲାଭେ,
ବରିନିଅ ନିର୍ବାଣ ରତନେ ।

ପୀୟୂଷବର୍ଷି ଏହି ବାକ୍ୟରେ ବିଚ୍ଛେଦକ୍ଲିଷ୍ଟ ମନକୁ ଅଭିଷିକ୍ତ ଓ ସଞ୍ଜୀବିତ କରି ସଂଯମଶାଳିନୀ ବିଶାଖା ଧୀରେ ଧୀରେ ଉଠି ସନ୍ତର୍ପଣରେ ଭଗବାନଙ୍କୁ ପ୍ରଣାମ ଓ ପ୍ରଦକ୍ଷିଣ ପୂର୍ବକ ନିଃଶବ୍ଦରେ, ଦୃଢ଼ପଦକ୍ଷେପରେ ରେଖାହୀନ ଶାନ୍ତମୁଖରେ ଅନ୍ତଃପୁରାଭିମୁଖରେ ଗମନ କଲେ ।

ଅନୁବାଦ । ଉଦ୍‌ବୋଧନ, ୬୧ ବର୍ଷ, ୧୨ଶ ସଂଖ୍ୟା ।

---

# ପରମ ଜନନୀ ଶାରଦାମଣି

ଶ୍ରୀମତୀ ହେମଲତା ମାନସିଂହ

ଶ୍ରୀରାମକୃଷ୍ଣ ପରମହଂସଦେବ ଓ ତାଙ୍କର ଶିଷ୍ୟ ବିବେକାନନ୍ଦ ପୃଥିବୀର ସର୍ବଦେଶରେ ଆଜି ସମ୍ମାନିତ । ନିରକ୍ଷର ପୂଜାରୀ ଗଦାଧରଙ୍କର ଜୀବନୀ ଯେ, ଲେଖିବାକୁ ଗଲେ ବିଶ୍ୱବିଖ୍ୟାତ ମନୀଷୀ ଓ ଲେଖକ ରମାଁ ରୋଲାଁ, ଏହାଠାରୁ ଅଧିକତର ସାହିତ୍ୟିକ ବିସ୍ମୟ ଆଉ କ'ଣ ଥାଇ ପାରେ ?

ଊନବିଂଶ ଶତାବ୍ଦୀରେ ସୁଦୂର ଆମେରିକା ଯାଇ ବିଶ୍ୱଧର୍ମ—ସଭାରେ ବିବେକାନନ୍ଦ ଗୁରୁଙ୍କର ଧର୍ମ ପ୍ରଚାର କରି ସହସା ବିଶ୍ୱପ୍ରସିଦ୍ଧ ହେଲେ ଓ ହିନ୍ଦୁ ସଂସ୍କୃତିର ମାନ ରଖିଲେ । ସେହି ପ୍ରଚାରରେ ହିନ୍ଦୁଧର୍ମ ପ୍ରତି ଆକୃଷ୍ଟ ହୋଇ ଆସିଲେ ଭଗିନୀ ନିବେଦିତା । ଭଗିନୀ ନିବେଦିତା ଉଚ୍ଚଶିକ୍ଷିତା ଓ ପ୍ରତିଭାଶାଳୀ ମହିଳା । ସେ ନିରକ୍ଷରା ପଲ୍ଲୀବାଳା ଶାରଦାମଣିଙ୍କ ବିଷୟରେ ଲେଖିଛନ୍ତି— "ଶ୍ରୀମାଙ୍କ ନିକଟରେ ବସିଲେହିଁ ମନରେ ପ୍ରଶାନ୍ତି ଜାତ ହୁଏ ।"

ଯୁଗକଳ୍ପ ପରମହଂସ, ତାଙ୍କର ସ୍ତ୍ରୀ ଶାରଦାମଣି । ସ୍ତ୍ରୀ କହିଲେ ହୁଏତ ଭୁଲ ହେବ । କାରଣ, ସାଧାରଣ ସ୍ୱାମୀ ସ୍ତ୍ରୀ ସମ୍ପର୍କ ସେମାନଙ୍କର ନ ଥିଲା । କେବଳ ସହଧର୍ମିଣୀ କହିଲେ

ଯଥେଷ୍ଟ ବି ହେବ ନାହିଁ । ହିନ୍ଦୁଧର୍ମର ଅଖଣ୍ଡ ବିଶ୍ୱାସରେ ସେମାନେ ଥିଲେ ଜନ୍ମଜନ୍ମାନ୍ତରର । ରାମକୃଷ୍ଣ କହୁଥିଲେ ଈଶ୍ୱର ଏକ । ପାଣି, ଜଳ, ଓ୍ୟାଟର କହିଲେ ସେଇ ଏକ ଜଳକୁ ହିଁ ବୁଝାଏ । କିନ୍ତୁ ଆମକୁ ଆଶ୍ଚର୍ଯ୍ୟ ଲାଗେ ଦକ୍ଷିଣେଶ୍ୱରର କାଳୀପୂଜକ ବ୍ରାହ୍ମଣ ରାମକୃଷ୍ଣ ଯେଉଁ ଐଶ୍ୱରିକ ଶକ୍ତି ବଳରେ ଏବଂ ନିଜର ଅଶେଷ ସାଧନାଦ୍ୱାରା ପରମହଂସତ୍ୱ ପ୍ରାପ୍ତ ହୋଇଥିଲେ; ତାଙ୍କର ସହଧର୍ମିଣୀ ଶାରଦାମଣି ପ୍ରଥମ ଜୀବନରେ ତାଙ୍କୁ ଦର୍ଶନ ନ ଦେଇ ମଧ୍ୟ (ସେକାଳର ସାମାଜିକ ପ୍ରଥା ଥିଲା ଯେ ସ୍ୱାମୀକୁ ଦିନରେ ଦେଖା-ଦେବନି, କେବଳ ନିଶୀଥ ରାତ୍ରିରେ ଯେତିକି ପରିଚୟ । ସେ ମଧ୍ୟ ସ୍ୱାମୀଙ୍କର ଶଯ୍ୟାସଙ୍ଗିନୀ ନ ଥିଲେ । ) କିପରି ସେହି ବିଶ୍ୱଜନନୀତ୍ୱ ପ୍ରାପ୍ତ ହେଲେ ଏବଂ ରାମକୃଷ୍ଣଙ୍କ ବାଣୀକୁ ବଞ୍ଚାଇ ରଖିବାରେ ସାହାଯ୍ୟ କଲେ । ଏହାହିଁ ପରମ ଆଶ୍ଚର୍ଯ୍ୟଜନକ ।

ଶାରଦାମଣି ରାମକୃଷ୍ଣଙ୍କଠାରୁ ବୟସରେ ଅଠର ବର୍ଷ ସାନ । ବିବାହ ବୟସକୁ ସେ ମାତ୍ର ନବମ ବର୍ଷର ବାଳିକା । ବିଭା ହୋଇ ସେ କେତେ ଦିନ ପାଇଁ ଶ୍ୱଶୁରାଳୟକୁ ଆସିଥିଲେ । ନିଦ୍ରିତାବସ୍ଥାରେ ତାଙ୍କ ଦେହରୁ ଅଳଙ୍କାରତକ ବାହାରକରି ନିଆଯିବାରୁ ଶାରଦାମଣି ଉଠି କ୍ରନ୍ଦନ କଲେ । ସେତେବେଳେ ରାମକୃଷ୍ଣ ଆଶ୍ୱାସନା ଦେଇ କହିଲେ, 'ମୁଁ ତମର ଅଳଙ୍କାର ଗଢ଼ାଇ ଦେବି ।'

ତାଙ୍କ ଶ୍ୱଶୁରାଳୟର ଅବସ୍ଥା ସ୍ୱଚ୍ଛଳ ନ ଥିଲା । ତେଣୁ ସେମାନେ ବିବାହ ସମୟକୁ ପ୍ରତିବେଶୀଠାରୁ କେତେଦିନ ପାଇଁ ଅଳଙ୍କାର ମାଗି ଆଣି ତାଙ୍କୁ ପିନ୍ଧିବାକୁ ଦେଇଥିଲେ । ଗ୍ରାମ୍ୟ ଜୀବନରେ ବିଶେଷ ଉତ୍ସବ ଉପଲକ୍ଷରେ ଏହିପରି ମାଗିଆଣି କାର୍ଯ୍ୟ ଚଳା ହୋଇଥାଏ ।

ପର ଜୀବନରେ ସେଇ ପ୍ରତିଶ୍ରୁତି ରାମକୃଷ୍ଣ ପାଳନ କରିଥିଲେ, ଶାରଦା ଦେବୀଙ୍କ ପାଇଁ ଅଳଙ୍କାର ପ୍ରସ୍ତୁତ କରାଇ. ଯଦିଚ ସେ ନିଜେ ଟଙ୍କା, ପଇସା, ସୁନା, ରୁପା କିଛି ସ୍ପର୍ଶ କରନ୍ତି ନାହିଁ । ଜାଗ୍ରତାବସ୍ଥା ଥାଉ, ନିଦ୍ରିତାବସ୍ଥାରେ ମଧ୍ୟ ଯଦି କେହି ତାଙ୍କୁ ପରୀକ୍ଷା ସ୍ୱରୂପ ଅର୍ଥ ସ୍ପର୍ଶ କରାଉଥିଲା, ସଙ୍ଗେ ସଙ୍ଗେ ତାଙ୍କ ହସ୍ତପଦ ବିକୃତ ହୋଇ ଉଠୁଥିଲା ।

ଯେତେବେଳେ ଯୁବତୀ ଶାରଦାମଣି ଦକ୍ଷିଣେଶ୍ୱରକୁ ଆସିଲେ, ଶ୍ରୀ ରାମକୃଷ୍ଣ ତାଙ୍କୁ ପଚାରିଥିଲେ, 'ତମେ ଇଚ୍ଛାକରିବ ଯଦି ମୁଁ ଗୃହୀ ହେବି ।' ଶାରଦାମଣି କହିଲେ 'ନା, ଏଇ ଭଲ । ଗୃହୀ ହେବ କାହିଁକି ?'

ଶାରଦାମଣି ପିତ୍ରାଳୟରେ ଥିଲାବେଳେ ଥରେ ଦୁର୍ଭିକ୍ଷ-ପଡ଼ିଥିଲା । ବୁଭୁକ୍ଷୁ ଜନତା ଖାଇବାକୁ ବ୍ୟଗ୍ର ହୋଇ ପଡ଼ନ୍ତି । ବାଳିକା ଶାରଦା ଗରମ ଖେଚେଡ଼ିକୁ ବିଞ୍ଚି ବିଞ୍ଚି ଶୀତଳ କରି ସେମାନଙ୍କୁ ଖାଇବାକୁ ଦେଉଥିଲେ ।

ରାମକୃଷ୍ଣଙ୍କ ନାମ ଥିଲା ଗଦାଧର । ଗଦାଧରଙ୍କର ଭାବସମାଧି ହେଉଥାଏ । ଅଜ୍ଞ ଲୋକେ ଜାଣି ନ ପାରି ଗଦାଧର ପାଗଳା ହୋଇ ଯାଇଛି ବୋଲି କହୁଥାନ୍ତି । ଏହି ପାଗଳା ସ୍ୱାମୀଙ୍କୁ ନେଇ ଶାରଦାମଣି ଆଶ୍ରମଜୀବନ ଯାପନ କରିଅଛନ୍ତି ।

ସ୍ତ୍ରୀର ଇଚ୍ଛାକୁ ସମ୍ମାନ ଦେବା ଆମ ହିନ୍ଦୁ ସଂସ୍କୃତିରେ ଆଉ କେହି କରି ନାହାନ୍ତି, କେବଳ ପରମହଂସଙ୍କ ବ୍ୟତୀତ । ହିନ୍ଦୁଧର୍ମ ସଂସ୍କାରକ ବୁଦ୍ଧଦେବ, ଜାତିବର୍ଣ୍ଣନିର୍ବିଶେଷରେ ସମସ୍ତଙ୍କୁ ଭାଇ ବୋଲି କୋଳାଗ୍ରତ କରୁଥିବା ଉଦାରମନା ଶ୍ରୀଚୈତନ୍ୟ; ଏମାନେ ସ୍ତ୍ରୀକୁ ପରିତ୍ୟାଗ କରି ଧର୍ମ ପ୍ରଚାର କରିଅଛନ୍ତି । ହିନ୍ଦୁ ଧର୍ମରେ ନାରୀ ହେଉଛି ନରକର ଜୀବ । ତାକୁ ତ୍ୟାଗ ନ କଲେ, ମୁକ୍ତି

ମିଳିବ ନାହିଁ । କେବଳ ରାମକୃଷ୍ଣ ଦେଖାଇଦେଲେ ବିବାହ କରିଯାଇ ଅଖଣ୍ଡ ବ୍ରହ୍ମଚର୍ଯ୍ୟ ମଧ୍ୟ ରଖାଯାଇ ପାରେ ।

ଶାରଦାମଣି ପାଠପଢ଼ି ନ ଥିଲେ ମଧ୍ୟ ରାମକୃଷ୍ଣ ତାଙ୍କୁ ସମସ୍ତ ଶିକ୍ଷା ଦାନ କରି ମହାଜ୍ଞାନୀ କରି ଯାଇଛନ୍ତି । ସେ ଅସାଧାରଣା ନାରୀ ନ ହୋଇଥିଲେ ରାମକୃଷ୍ଣଙ୍କର ଶିକ୍ଷା ଗ୍ରହଣ କରି ପାରିଥାନ୍ତେ କି ? ଥରେ ଟ୍ରେନରେ ଯିବାକୁ ପଡ଼ିବାରୁ ରାମକୃଷ୍ଣ କହିଥିଲେ, ଟ୍ରେନରେ ଆଗେ ଚଢ଼ିବ, ପଛେ ଓହ୍ଲାଇବ ।

ରାମକୃଷ୍ଣଙ୍କର ପ୍ରସିଦ୍ଧି ଯେତେବେଳେ ଦେଶର ଚତୁର୍ଦ୍ଦିଗରେ ବ୍ୟାପ୍ତ ହୋଇ ଯାଇଥିଲା, ଜଣେ ଧନବାନ୍ ମାରୱାଡ଼ୀ ଲକ୍ଷେ ଟଙ୍କା ରାମକୃଷ୍ଣଙ୍କୁ ଦେବାକୁ ଇଚ୍ଛା ପ୍ରକାଶ କରିବାରୁ ସେ ଶାରଦାଦେବୀଙ୍କୁ ପଚାରିଲେ 'ମୁଁ ତ ଅର୍ଥ ଛୁଏଁ ନାହିଁ, ତମେ ନିଅ ?' ଶାରଦାଦେବୀ ନାସ୍ତି କଲେ । 'ମୁଁ ନେଇ ତମର ପାଇଁ ଖର୍ଚ୍ଚ କରିବି ତ !' ସେତେବେଳେ ସେମାନେ ଅଭାବଗ୍ରସ୍ତ ହୋଇ ଚଳୁଥାନ୍ତି । କୌଣସି କୌଣସି ଭକ୍ତ ଯେଉଁଦିନ ଯାହା ଯତ୍ସାମାନ୍ୟ ଦିଅନ୍ତି, ସେଇଥିରେହିଁ ସେମାନେ ଚଳାଇ ନେଉଥିଲେ ।

ପ୍ରଥାନୁଯାୟୀ ରାମକୃଷ୍ଣଙ୍କ ମହାସମାଧି ପରେ ଶାରଦାମଣି ହସ୍ତରୁ ହସ୍ତାଭରଣ କାଢ଼ି ଦେଇଥିଲେ । ରାମକୃଷ୍ଣ ତାଙ୍କୁ ଦର୍ଶନ ଦେଇ କହିଥିଲେ 'ମୋର ତ ମୃତ୍ୟୁ ନାହିଁ, ତମେ ହସ୍ତାଭରଣ ପରିଧାନ କର ।' ବଞ୍ଚିଥିବା ଯାଏ ଶାରଦାମଣି ଏଇ ନିର୍ଦ୍ଦେଶ ପାଳନ କରି ଆସିଛନ୍ତି ।

ରାମକୃଷ୍ଣଙ୍କ ତିରୋଧାନ ପରେ ଶାରଦାମଣି ଅର୍ଥାତ୍ ଶ୍ରୀ ଶ୍ରୀମା ଦୀକ୍ଷା ଦେଉଥାନ୍ତି । ସଂସାରର ପାପତାପ କ୍ଲିଷ୍ଟ ନରନାରୀଙ୍କୁ ଆଶ୍ରୟ ଦେବାହିଁ ଦୀକ୍ଷା । ପାପତାପର ଅନୁଶୋଚନାରେ ଯେ ଦଗ୍ଧ ହେଉଛି, ଯେ ନିଦାରୁଣ ଶୋକରେ ମୁହ୍ୟମାନ, ଯେ ଅସହ୍ୟ

ରୋଗରେ ଜର୍ଜରିତ, ସେହିମାନେ ହିଁ ଶ୍ରୀମାଙ୍କର ଶରଣାପନ୍ନ ଅନ୍ତି । ସେ ସେମାନଙ୍କୁ ଦୀକ୍ଷା ଦେଇ ସାନ୍ତ୍ୱନା ଦିଅନ୍ତି । ଉପଦେଶ ଦ୍ୱାରା ସେମାନଙ୍କ ଦଗ୍ଧ ହୃଦୟରେ ଶାନ୍ତିବାରି ସିଞ୍ଚନ କରନ୍ତି । ଏହି ଦେବୀ ନିରହଙ୍କାର ମନରେ ପରମହଂସଦେବଙ୍କ ପ୍ରତିନିଧି ସ୍ୱରୂପ ସକଳ କାର୍ଯ୍ୟ ସମାଧାନ କରୁଥିଲେ ।

ମଠରେ ଜନୈକା ନାରୀ ଜଣେ ମୁସଲମାନ ଦାଗୀକୁ ଖାଇବାକୁ ଦେଉଥିଲା । ସାଧାରଣତଃ ଉଚ୍ଚବଂଶୀୟାମାନେ ଯେପରି ଫିଙ୍ଗାଫୋପଡ଼ା କରି ଦେଇଥାନ୍ତି, ସେ ସେହିପରି କରିବାର ଦେଖି ଶ୍ରୀ ମା ନିଜେ ପରିବେଷଣ କଲେ ଓ ତାର ଉଚ୍ଛିଷ୍ଟ ମଧ୍ୟ ପରିଷ୍କାର କଲେ । ଉକ୍ତ ନାରୀକୁ ତିରସ୍କାର କରି ବୁଝାଇ ଦେଇଥିଲେ, ମନୁଷ୍ୟକୁ ଏପରି ବ୍ୟବହାର କରିବା ଅନୁଚିତ, ତା' ମନରେ ଦୁଃଖ ହେବ ।

ଶାରଦାମଣି ଶ୍ରୀ ଶ୍ରୀ ମା ନାମରେ ଅଭିହିତ ହେବା ଆଦୌ ଅଯଥାର୍ଥ ନୁହେଁ । ତାହା ନାନା ଭାବରେ ପ୍ରମାଣିତ ହୋଇଛି । କୌଣସି ପତିତାନାରୀ ତାଙ୍କ ନିକଟକୁ ବାରମ୍ବାର ଯିବା ଆସିବା କରିବାରୁ ଅନ୍ୟ ସ୍ତ୍ରୀ ଭକ୍ତମାନେ ଆପତ୍ତି କଲେ । ଶ୍ରୀ ଶ୍ରୀ ମା ଶାରଦା ଦୃଢ଼ ଭାବରେ ତାର ପ୍ରତିବାଦ କରି କହିଥିଲେ 'ଯିଏ ମୋର ଆଶ୍ରୟ ଗ୍ରହଣ କରିଛନ୍ତି, ସେମାନେ ନିଶ୍ଚୟ ଆସିବେ ।' ଅନ୍ୟମାନେ ସେହି ପତିତାନାରୀକୁ ଘୃଣା କରୁଥିଲେହେଁ ପରମଜନନୀ ଶାରଦା ଦେବୀ ତାର ସେବା ଗ୍ରହଣ କରିବାରୁ ଅନ୍ୟ ଭକ୍ତମାନଙ୍କ ହୃଦୟରୁ କ୍ରମେ ସେହି ତାଚ୍ଛଲ୍ୟଭାବ ଅପସରି ଯାଇଥିଲା ।

ବଲରାମବାବୁ ରାମକୃଷ୍ଣଙ୍କର ଶ୍ରେଷ୍ଠ ସହାୟକ । ତାଙ୍କ ସ୍ତ୍ରୀ ମଧ୍ୟ ଏହି ବିପଥଗାମିନୀ ନାରୀ ଯଦି ଶ୍ରୀମାଙ୍କ ନିକଟକୁ ଆସେ ତେବେ ସେ ଆସିବେ ନାହିଁ ବୋଲି ସମ୍ବାଦ ଦେଇ ପଠାଇଥିଲେ ।

ଅବଚଳିତା ଜନନୀ ଶାରଦା କାହାରି କଥାରେ କର୍ଣ୍ଣପାତ କରି ନ ଥିଲେ । କୌଣସି କୌଣସି ଭକ୍ତ ବିରୁଦ୍ଧରେ ଅନ୍ୟ ଭକ୍ତଗଣ ଆପତ୍ତି ଉଠାଇଲେ, ଜନନୀ ଶାରଦା କହୁଥିଲେ 'ମୋର ପୁଅ ଯଦି ଧୂଳି ମାଟି ହୁଏ, ତେବେ ମତେ ସେହି ଧୂଳି କାଦୁଅ ପୋଛି ଗ୍ରହଣ କରିବାକୁ ହେବ । ପରିତ୍ୟାଗ କର ନୁହେଁ ।'

ଏହା କେତେ ଗୁରୁତ୍ୱପୂର୍ଣ୍ଣ, କେତେ ଉଦାର ହେଲେ ମନୁଷ୍ୟ ଏହି ଭାବ ଗ୍ରହଣ କରିପାରେ ! ସମସ୍ତଙ୍କ ପ୍ରତି ସସ୍ନେହ ବ୍ୟବହାର କରିବା କେବଳ ସେହି ପରମଜନନୀ ଶାରଦାମଣି, ମହାମାନବ ମହାତ୍ମା ଗାନ୍ଧି, ଯୀଶୁଖ୍ରୀଷ୍ଟଙ୍କ ନିକଟରେ ସମ୍ଭବ । ଯୀଶୁଖ୍ରୀଷ୍ଟ କହିଥିଲେ 'ଦୋଷୀକୁ ଦଣ୍ଡ ଦିଅନାହିଁ, କ୍ଷମା କର ।' ସେହି ବାକ୍ୟହିଁ ଶାରଦା ଦେବୀ କାର୍ଯ୍ୟରେ ପରିଣତ କରିଯାଇଅଛନ୍ତି ।

ଶାରଦାଦେବୀଙ୍କ ଯୋଗୁଁ ଆଜି ସମଗ୍ର ହିନ୍ଦୁନାରୀର ମୁଖ ଉଜ୍ଜ୍ୱଳ । ଶାରଦାଦେବୀଙ୍କ ପାଇଁ ହିନ୍ଦୁନାରୀ ନିଜକୁ ଗୌରବାନ୍ୱିତ ମନେ କରେ । କାରଣ ସେ କେବଳ ନରକର ନାରୀ ନୁହେଁ, ସେ ପରମପୁରୁଷ ରାମକୃଷ୍ଣଙ୍କ ଉଦାରଧର୍ମର ପରିପୂରକ । ତାଙ୍କ ଅନୁଷ୍ଠାନର ଶୁଭଦାତ୍ରୀ, ପ୍ରେରଣାର ଉତ୍ସ ମଧ୍ୟ ।

ଆଜି ଯେଉଁ ରାମକୃଷ୍ଣ ମିଶନ ପୃଥିବୀର ସର୍ବତ୍ର ନାନା ଶୁଭ କାର୍ଯ୍ୟମାନ କରୁଛି, ତାହା ଜନନୀ ଶାରଦାଙ୍କର ପ୍ରେରଣାର ଫଳ । ତାଙ୍କର ପୁତ୍ରତୁଲ୍ୟ ଶିଷ୍ୟମାନଙ୍କୁ ନାନା ଦୁଃଖ କଷ୍ଟ ଅଭାବ ଭିତରେ ସେ ଯେଉଁ ସସ୍ନେହ ଉତ୍ସାହ ଦାନ କରିଥିଲେ, ତାହାହିଁ ଆଜି ବେଲୁଡ଼ମଠ ପରି ବିରାଟ ଅନୁଷ୍ଠାନ ରୂପେ ଦଣ୍ଡାୟମାନ ହୋଇ ପାରିଛି ।

---

# ଭଗିନୀ ନିବେଦିତା

ପ୍ରମୀଳା ରାୟ

ସିଷ୍ଟର ବା ଭଗିନୀ ନିବେଦିତା ଭାରତବର୍ଷର ନରନାରୀଙ୍କର ସେବା କାର୍ଯ୍ୟରେ ଅଦ୍ୱିତୀୟା ହେଲେହେଁ ତାଙ୍କର ଜୀବନୀ ସମସ୍ତଙ୍କୁ ସୁବିଦିତ ନୁହେଁ ।

ଭଗିନୀ ନିବେଦିତା ସ୍ୱାମୀ ବିବେକାନନ୍ଦଙ୍କର ବିଦେଶୀ ଶିଷ୍ୟମାନଙ୍କ ମଧ୍ୟରେ ଅନ୍ୟତମା ।

ନିବେଦିତା ଯେତେବେଳେ ବଙ୍ଗ ଦେଶକୁ ଆସିଥିଲେ, ସେତେବେଳେ ବଙ୍ଗ ଦେଶର ଯୁବକମାନେ ସ୍ୱାଧୀନତା ଯଜ୍ଞରେ ଆତ୍ମବଳି ଦେବା ପାଇଁ ସଜ୍ଜିତ ହେଉଥାଆନ୍ତି । ଏହାଙ୍କର ପୂର୍ବନାମ ହେଉଛି କୁମାରୀ ମାର୍ଗାରେଟ ଏଲିଜାବେଥ ନୋବଲ୍ । ଉତ୍ତର ଆୟାରଲଣ୍ଡରେ କାଥଲିକ ପରିବାରରେ ଏହାଙ୍କର ଜନ୍ମ । ଏହାଙ୍କର ମାତା ଜାତିରେ ଆଇରିଶ ଥିଲେ । ତାଙ୍କ ପିତା ଧର୍ମଯାଜକ କାର୍ଯ୍ୟରେ ଜୀବନପ୍ରାଣ ଉତ୍ସର୍ଗ କରିଥିଲେ । ନିବେଦିତାଙ୍କୁ ଛାଡ଼ି ତାଙ୍କର ଦୁଇକନ୍ୟା ଥିଲେ । ମାର୍ଗାରେଟ ଗ୍ଯରବର୍ଷ ବୟସ ପର୍ଯ୍ୟନ୍ତ ପିତାମହୀଙ୍କ ନିକଟରେ ଥିଲେ । ପରେ ପିତାମାତାଙ୍କ ନିକଟକୁ ଶିକ୍ଷା ଲାଭ ପାଇଁ ଗଲେ । କଲେଜ ପଢ଼ିବା ସମୟରେ ତାଙ୍କର ପିତୃ ବିୟୋଗ ହେଲା । ଆର୍ଥିକ ଅଭାବ ଯୋଗୁଁ କଲେଜ ପାଠ

ବନ୍ଦ ହେଲା । ସେ ସେଠାକାର ଗୋଟିଏ ସ୍କୁଲରେ ଶିକ୍ଷୟିତ୍ରୀ କାର୍ଯ୍ୟ କରିବାକୁ ଲାଗିଲେ । ଏହିଠାରେ ଗୋଲେୟା ନାମକ ୨୩ ବର୍ଷର ଏକ ଯୁବକ ସହିତ ତାଙ୍କର ପରିଚୟ ହେଲା । ପରେ ଏହାଙ୍କ ସହିତ ବିବାହ କଥା ଉଠିଥିଲା । କିନ୍ତୁ ଯୁବକ ଗୋଲେୟା ଅକାଳରେ ମୃତ୍ୟୁମୁଖରେ ପଡ଼ିବାରୁ ମାର୍ଗାରେଟ୍‌ଙ୍କୁ ନିରାଶ ହେବାକୁ ହୋଇଥିଲା ।

ତାହାପରେ ସେ ଅନ୍ୟତ୍ର ବଦଳି ହୋଇଗଲେ ଓ ସେଠାରେ ବୟସ୍କା ଛାତ୍ରୀମାନଙ୍କୁ ପଢ଼ାଇବା କାର୍ଯ୍ୟରେ ନିଯୁକ୍ତ ହେଲେ । ସେଠାରୁ କେତେଦିନ ପରେ ଲଣ୍ଡନ ନଗରୀକୁ ତାଙ୍କର ଏକ ବାନ୍ଧବୀଙ୍କ ଅନୁରୋଧରେ ଶିକ୍ଷକତା କରିବାକୁ ଆସିଲେ । ଏହି ସମୟରେ ମାର୍ଗାରେଟ୍ ସାହିତ୍ୟିକ ବନ୍ଧୁମାନଙ୍କ ସହିତ ସାହିତ୍ୟ-ସେବା ମଧ୍ୟ କରୁଥାନ୍ତି । କିନ୍ତୁ ନିଜ ନାମ ପତ୍ରିକାରେ ପ୍ରକାଶ ନ କରି ଛଦ୍ମ ନାମରେ ପ୍ରବନ୍ଧ ଇତ୍ୟାଦି ଲେଖନ୍ତି ଓ ତାଙ୍କ ଉପାର୍ଜନର ଅଧିକାଂଶ ଦୀନ ଦୁଃଖୀଙ୍କ ସେବାରେ ବ୍ୟୟ କରନ୍ତି । ଏହିଠାରେ ମଧ୍ୟ ଜଣେ ଯୁବକ ସହିତ ସେ ପ୍ରଣୟାବଦ୍ଧ ହେଲେ । ମାତ୍ର ସେହି ଯୁବକ ତାଙ୍କର ପୂର୍ବ ପ୍ରଣୟିନୀକୁ ବିବାହ କଲେ । ଏଥିରେ ମାର୍ଗାରେଟ୍‌ଙ୍କ ମନରେ ଦାରୁଣ ଆଘାତ ଲାଗିଲା । କିନ୍ତୁ କିଛିଦିନ ପରେ ପୂର୍ଣ୍ଣୋଦ୍ୟମରେ ନିଜର କାର୍ଯ୍ୟ କରିବାକୁ ଲାଗିଲେ ।

ଶିକ୍ଷୟିତ୍ରୀ କାର୍ଯ୍ୟ କରୁଥିବା ବେଳେ ତାଙ୍କର ଜନୈକ ବନ୍ଧୁଙ୍କ ସହିତ ମିଶି ସିସେମ୍‌କ୍ଲବ୍ ବୋଲି ଗୋଟିଏ କ୍ଲବ ପ୍ରତିଷ୍ଠା କଲେ । ନୂତନ ଶିକ୍ଷାର ଆଦର୍ଶ ପ୍ରଚାର କରିବାର ମୂଳଭିତ୍ତି ଏହି ସିସେମ୍ କ୍ଲବ । ଏହି ସ୍ଥାନରେହିଁ ସେ ସ୍ୱାମିଜୀଙ୍କର ବାଣୀ ଶୁଣିବାର ସୁଯୋଗ ପାଇଥିଲେ । ମାର୍ଗାରେଟ୍ ସେହି ସମୟରେ

ଜଣେ ସମାଜ ସଂସ୍କାରକ ଶିକ୍ଷାବ୍ରତୀ ଲେଖିକା ଓ ଦରିଦ୍ର ନରନାରୀ-ଙ୍କର ସେବିକା ହିସାବରେ ଖ୍ୟାତ ଥିଲେ ।

ତାଙ୍କୁ ଯେତେବେଳେ ୨୯ ବର୍ଷ ସେତେବେଳେ ସେ ତାଙ୍କର ବାନ୍ଧବୀମାନଙ୍କ ସହ ସ୍ୱାମିଜୀଙ୍କର ବେଦାନ୍ତ ବିଷୟକ ଆଲୋଚନା ଶୁଣିବାକୁ ଓୟେଷ୍ଟଏଣ୍ଡରେ ଇ. ଟି. ଷ୍ଟାର୍ଡ଼ଙ୍କ ଗୃହକୁ ଯାଇଥିଲେ । ପ୍ରଥମ ଦିନ କିଛି ବୁଝି ପାରିଲେ ନାହିଁ ବୋଲି ମନ ମଧ୍ୟରେ ବାରଂବାର ଚିନ୍ତାକଲେ । କ୍ରମେ ମନ ମଧ୍ୟରେ ଏକ ନୂତନ ସଂସ୍କୃତିର ବାଣୀ ସେ ଶୁଣିବାକୁ ପାଇଲେ । ଆହୁରି ଦୁଇଥର ଲଣ୍ଡନ ନଗରୀରେ ସ୍ୱାମିଜୀଙ୍କର ବକ୍ତୃତା ଶୁଣିଥିଲେ । ସ୍ୱାମିଜୀଙ୍କର ଦ୍ୱିତୀୟବାର ଲଣ୍ଡନ ଅବସ୍ଥିତି ସମୟରେ ମାର୍ଗାରେଟ ତାଙ୍କର ଘନିଷ୍ଠ ସମ୍ପର୍କରେ ଆସିଲେ ଓ ତାଙ୍କୁ ଗୁରୁ ପଦରେ ବରଣ କଲେ । ସ୍ୱାମିଜୀଙ୍କର ବାଣୀ ଶୁଣି ମାର୍ଗାରେଟ ଭାରତବର୍ଷ ଆଡ଼କୁ କ୍ରମେ ଆକୃଷ୍ଟ ହେବାକୁ ଲାଗିଲେ । ଭାରତବର୍ଷକୁ ଆସି ଭାରତୀୟ ଭାଇଭଉଣୀମାନଙ୍କର ସେବା କରିବାର ଆକାଙ୍କ୍ଷା ତାଙ୍କ ମନରେ ଜାଗ୍ରତ ହେଲା । ତାହା ସେ ଗୁରୁଙ୍କ ନିକଟରେ ପ୍ରକାଶ କଲେ । ବିଦୁଷୀ ମହିଳାର କଥାରେ ସ୍ୱାମିଜୀଙ୍କ ହୃଦୟ ବିଗଳିତ ହେଲା । ସେ ଭାରତୀୟ ନାରୀମାନଙ୍କର ଉନ୍ନତି ସାଧନ ନିମିତ୍ତ ମାର୍ଗାରେଟଙ୍କୁ ଆଦେଶ ଦେଲେ । ସେ ଭାରତବର୍ଷକୁ ଆସିବାର ସ୍ଥିର କଲେ । ଭାରତକୁ ନିଜର ଦେଶ ଭାବିବାକୁ ମନରେ ଧାରଣା କରି ନେଲେ । ୧୮୯୮ ସାଲରେ ସେ ଭାରତରେ ପଦାର୍ପଣ କରି ବେଲୁଡ଼ ମଠ ନିମିତ୍ତ ନୂତନ କ୍ରୟ ହୋଇଥିବା ବାସ ଭବନରେ ଅନ୍ୟାନ୍ୟ ମାର୍କିନ ଦେଶୀୟ ଶିଷ୍ୟାମାନଙ୍କ ସହ ବାସ କରିବାକୁ ଲାଗିଲେ ।

ଏହାପରେ ସ୍ୱାମିଜୀ ମାର୍ଗାରେଟଙ୍କୁ ଦୀକ୍ଷା ଦାନ କରି ନିବେଦିତା ନାମ ଦେଇଥିଲେ । ସେହି ୧୮୯୮ ସାଲ ନଭେମ୍ବର

ମାସରେ କଲିକତା ନଗରୀରେ ସ୍ୱାମିଜୀଙ୍କ ପ୍ରେରଣା ଓ ମାତା ଶାରଦା ଦେବୀଙ୍କ ଆଶୀର୍ବାଦ ଘେନି ସେ ଗୋଟିଏ ବାଳିକା ବିଦ୍ୟାଳୟ ସ୍ଥାପନ କରି ସ୍ତ୍ରୀ-ଶିକ୍ଷା ବିସ୍ତାର କାର୍ଯ୍ୟରେ ଅଗ୍ରଣୀ ହୋଇ ବାହାରିଲେ । ଏହି ମହୀୟସୀ ନାରୀ କଲିକତା ନଗରୀରେ ପ୍ଲେଗ ରୋଗର ପ୍ରାଦୁର୍ଭାବ ଦେଖି ନିଜେ ସାହି ସାହି ଗଳି ଗଳି ବୁଲି ରୋଗୀର ପରିଚର୍ଯ୍ୟା କରୁଥିଲେ ।

ସ୍ୱାମିଜୀଙ୍କର ଆଦେଶକୁ ଦେବାଦେଶ ପରି ମଣି ସେବା ଓ ସ୍ତ୍ରୀ ଶିକ୍ଷା କାର୍ଯ୍ୟରେ ସେ ଆତ୍ମୋତ୍ସର୍ଗ କରିଥିଲେ । ଦ୍ୱିତୀୟଥର ଲଣ୍ଡନରୁ ଫେରି ବେଶୀ ଦିନ ସ୍ୱାମିଜୀଙ୍କ ସଙ୍ଗରେ ରହିବା ତାଙ୍କ ଭାଗ୍ୟରେ ନ ଥିଲା । ୧୯୦୨ ସାଲ ଜୁଲାଇ ୪ ତାରିଖରେ ସ୍ୱାମିଜୀ ଦେହତ୍ୟାଗ କଲେ । ନିବେଦିତା ଏହି ନିଷ୍ଠୁର ବାର୍ତ୍ତା ଶ୍ରବଣ ମାତ୍ରେ ସେଠାକୁ ଯାଇ ତାଙ୍କର ମରଦେହ ମଠରେ ଥିବା ପର୍ଯ୍ୟନ୍ତ ପାଦତଳେ ବସି ସ୍ନେହୀ-ଜନ ପରି ପାଦରେ ହାତ ବୁଲାଉଥାନ୍ତି ଓ ତାଳପତ୍ର ପଙ୍ଖାଧରି ବ୍ୟଜନ କରୁଥାନ୍ତି ।

ସ୍ୱାମିଜୀ ତାଙ୍କୁ ସ୍ୱାଧୀନ ଭାବରେ ସେବା କରିବାର ଆଦେଶ ଦେଇଯାଇଥିଲେ । ସେହି ଆଦେଶାନୁସାରେ ସେ ରାମକୃଷ୍ଣ ମିଶନ ସଙ୍ଘ ମଧ୍ୟରୁ ନାମ କଟାଇ ଦେଇଥିଲେ । ଭାରତୀୟମାନଙ୍କର ସେବାରେ ସଂପୂର୍ଣ୍ଣରୂପେ ନିଜର ମନପ୍ରାଣ ଢାଳି ଦେଇଥିଲେ । ସେ ବାଳିକାମାନଙ୍କୁ ମିରାବାଈ, ଅହଲ୍ୟାବାଈ, ଝାନ୍ସୀ ରାଣୀ ଓ ରାଣୀ ଭବାନୀଙ୍କ ଆଦର୍ଶ ସମ୍ମୁଖରେ ରଖି ଶିକ୍ଷା ଗ୍ରହଣ କରିବାକୁ ଶିକ୍ଷା ଦେଉଥିଲେ । ତ୍ୟାଗ, ସେବା, ଧର୍ମ୍ମଚର୍ଚ୍ଚା ଓ ସାହସିକତା ଏହିସବୁ ଗୁଣ ଥିଲେ ନାରୀ ନାରୀତ୍ୱର ଶିଖରଦେଶରେ ସ୍ଥାନପାଇ ଆଦର୍ଶ ସ୍ଥାନୀୟା ହୋଇ ରହେ; ଏହାହିଁ ତାଙ୍କର ଶିକ୍ଷାଥିଲା । ଅର୍ଥାତ୍

ଯେଉଁ ଶିକ୍ଷାରେ ନାରୀର ନମ୍ରତା ଓ କୋମଳତା ହ୍ରାସହୁଏ, ସେ ଶିକ୍ଷା ଶିକ୍ଷା ହିସାବରେ ଶୋଭନୀୟ ନୁହେଁ ।

ବାଳିକା ବିଦ୍ୟାଳୟ ଓ ଦେଶ ମାତୃକା ସେବାରେ ତାଙ୍କର ସ୍ୱାସ୍ଥ୍ୟ ଭାଙ୍ଗି ପଡ଼ିଲା । ସ୍ୱାସ୍ଥ୍ୟ ପରିବର୍ତ୍ତନ ଲାଗି ତାଙ୍କୁ ଅଗ୍ରଜ ଜଗଦୀଶ-ଚନ୍ଦ୍ର ବସୁଙ୍କ ଦାର୍ଜିଲିଂସ୍ଥ ବାସ ଭବନରେ ରହିବା ପାଇଁ ପଠାଇ ଦିଆହେଲା । ସେ ଯିବା ପୂର୍ବରୁ ଗୋଟିଏ ବାଣୀ ତାଙ୍କର ବନ୍ଧୁ ବାନ୍ଧବୀମାନଙ୍କ ମଧ୍ୟରେ ବିତରଣ କରି ଯାଇଥିଲେ, ଯାହାକି ତାଙ୍କର ଶେଷ ଉକ୍ତି କହିଲେ ଚଳେ ।

ବିଖ୍ୟାତ ଡାକ୍ତର ସାର ନୀଳରତନ ସରକାରଙ୍କ ଚିକିତ୍ସା, ସାର ଜଗଦୀଶ ବସୁ ଓ ଲେଡି ଅବଳା ବସୁଙ୍କ ଅକ୍ଳାନ୍ତ ସେବା ସତ୍ତ୍ୱେ ସେ ଆରୋଗ୍ୟ ଲାଭ କଲେ ନାହିଁ । ୧୯୧୧ ସାଲ ୧୩ ତାରିଖ ଅକ୍ଟୋବର ମାସ ସକାଳେ ସେ ଦେହତ୍ୟାଗ କଲେ । ତାଙ୍କର ଅନ୍ତିମ ବାଣୀରେ ସେ ଦେଶବାସୀଙ୍କୁ ଶୁଣାଇ ଯାଇଥିଲେ ଯେ, "ମୋର ଜୀବନ ତରୀ ବୁଡ଼ୁଅଛି; ମାତ୍ର ମୁଁ ସୂର୍ଯ୍ୟୋଦୟ ଦେଖିବାକୁ ପାଇବି ।" ତାଙ୍କ ଶେଷ ଇଚ୍ଛା ଅନୁସାରେ ହିନ୍ଦୁ ପ୍ରଥାନୁସାରେ ତାଙ୍କର ଦେହାବଶେଷ ଶ୍ମଶାନରେ ଦାହ କରାହୋଇଥିଲା ।

# କମଳା ନେହେରୁ

ପଣ୍ଡିତ ଜବାହରଲାଲ ନେହେରୁଙ୍କ ସହଧର୍ମିଣୀ ଦେଶ ସେବିକା କମଳା ନେହେରୁଙ୍କୁ ପ୍ରାୟ ସମସ୍ତେ ଜାଣିଥିବେ ।

କମଳା, ଧନୀ ଏବଂ ଉଚ୍ଚ କାଶ୍ମୀରୀ ବ୍ରାହ୍ମଣ ବଂଶରେ ଜନ୍ମଗ୍ରହଣ କରିଥିଲେ । ସେ କନ୍ଭେଣ୍ଟ ସ୍କୁଲରେ ଶିକ୍ଷାଲାଭ କରିଥିଲେ । ସତର ବର୍ଷ ବୟସରେ ପଣ୍ଡିତ ଜବାହାରଲାଲ ନେହେରୁଙ୍କ ସହିତ ତାଙ୍କର ବିବାହ ହୋଇ ଯାଇଥିଲା । ସେ ଜଣେ ସୁସ୍ଥ ଓ ବଳିଷ୍ଠ ରମଣୀ ଥିଲେ। ବିବାହ ବେଳକୁ ସେ ତୁହେଁ ୧୦ ବର୍ଷର ବଡ଼ ସାନ ଥିଲେ । ବିବାହ ପୂର୍ବରୁ ଜବାହରଲାଲ କମଳାଙ୍କୁ ଦେଖି ପସନ୍ଦ କରିଥିଲେ । କମଳା କ୍ଷଣକୋପୀ ଥିଲେ । ସୁତରାଂ, କେବେ କେବେ, ବିବାହର ପ୍ରଥମ ଅବସ୍ଥାରେ ସାମାନ୍ୟଘଟଣା ନେଇ ଦାମ୍ପତ୍ୟ କଳହ ଘଟି ଯାଉଥିଲା ।

କମଳାଙ୍କ ଶ୍ୱଶୁର ପଣ୍ଡିତ ମୋତିଲାଲ, ବଡ଼ ଆଇନ ବ୍ୟବସାୟୀ ଥିଲେ । ତାଙ୍କ ପୁତ୍ର ଜବାହରଲାଲ ମଧ୍ୟ ବହୁତ ଶିକ୍ଷା ଲାଭ କରି ଓ ବାରିଷ୍ଟର ହୋଇ ଆସି ପିତାଙ୍କ ନିକଟରେ ଏଲାହା-ବାଦରେ ବ୍ୟବସାୟ ଆରମ୍ଭ କଲେ ।

୧୯୨୦ ସାଲରେ ପିତା ଓ ପୁତ୍ର ମହାତ୍ମା ଗାନ୍ଧିଙ୍କ ତ୍ୟାଗ ଓ ଅସହଯୋଗ ମନ୍ତ୍ରରେ ଦୀକ୍ଷିତ ହେଲେ । କମଳା ମଧ୍ୟ ସ୍ୱାମୀଙ୍କ ପଦ ଅନୁସରଣ କରି ରାଜନୈତିକ କ୍ଷେତ୍ରରେ ମହିଳା

କର୍ମୀମାନଙ୍କ ନେତୃତ୍ୱ ଗ୍ରହଣ କଲେ । ଏମାନେ ସମସ୍ତେ ଏମାନଙ୍କ ସମସ୍ତ ସମୟ ଓ ଶକ୍ତି ଦେଶସେବାରେ ଲଗାଇଲେ । କମଳା ବାରମ୍ବାର ଜେଲ ଗଲେ ଓ ଜେଲରୁ ମୁକ୍ତ ହୋଇ ବାହାରେ ଥିବା ସମୟରେ ଦିନରାତି କଂଗ୍ରେସ କାର୍ଯ୍ୟରେ ବ୍ୟସ୍ତ ରହୁଥିଲେ । ସୁକୁମାରୀ କମଳାଙ୍କ ଦେହରେ ଏପରି ଶ୍ରମ ନ ସିବାରୁ, ସ୍ୱାସ୍ଥ୍ୟଭଙ୍ଗ ହୋଇପଡ଼ିଲା । ସ୍ୱାସ୍ଥ୍ୟଭଙ୍ଗ ହେଲେ ମଧ୍ୟ କମଳା ମୋଟେ ବିଶ୍ରାମ କରୁ ନ ଥିଲେ ।

ଯେତେଦୂର ପାରୁଛ ଏବଂ ଯେ ପର୍ଯ୍ୟନ୍ତ ପାରୁଛ କାର୍ଯ୍ୟ କରିଯାଅ, ଏହି ନୀତିକୁ କମଳା ଜୀବନର ବ୍ରତ ପରି ପାଳିଥିଲେ । ସେ ସମୟରେ କମଳା ପୁରୁଷ ବେଶ ଧାରଣ କରି ସତ୍ୟାଗ୍ରହ ଆନ୍ଦୋଳନର ସେଚ୍ଛାସେବିକାମାନଙ୍କୁ ଡ୍ରିଲ ଶିଖାଉଥିଲେ । ଯେଉଁଠାରେ କୌଣସି ଦାୟିତ୍ୱପୂର୍ଣ୍ଣ କାର୍ଯ୍ୟ ପଡୁଥିଲା ସେଠାରେ କମଳା ଆଗଭର ହୋଇ ବାହାରି ପଡୁଥିଲେ । ମହିଳା କର୍ମୀମାନଙ୍କୁ ସେ ନିଜର ଆଦର୍ଶ ଅନୁସାରେ ଯେପରି ଅନୁପ୍ରାଣିତ କରୁଥିଲେ ତାହା ଦେଖି ଜବାହରଲାଲ ମୁଗ୍ଧ ହୋଇ ଯାଉଥିଲେ । ସ୍ୱାସ୍ଥ୍ୟହାନି ଯୋଗୁ ତାଙ୍କୁ ବେଳେ ବେଳେ ଚିକିତ୍ସକମାନଙ୍କ ପରାମର୍ଶ ଅନୁସାରେ ସ୍ୱାସ୍ଥ୍ୟ ନିବାସମାନଙ୍କରେ ରହିବାକୁ ପଡୁଥିଲା । ୧୯୨୦ ସାଲରେ ଜବାହରଲାଲ କମଳାଙ୍କ ସ୍ୱାସ୍ଥ୍ୟ ପରୀକ୍ଷା ଉଦ୍ଦେଶ୍ୟରେ କମଳାଙ୍କୁ ନେଇ ଇଉରୋପ ଯାଇଥିଲେ ଏବଂ ସୁଇଜରଲାଣ୍ଡରେ ଉଭୟେ ଅନେକ ଦିନ ରହିଥିଲେ । ଏହି ବିଶ୍ରାମ ଫଳରେ କମଳାଙ୍କ ସ୍ୱାସ୍ଥ୍ୟର ଉନ୍ନତି ଘଟିଥିଲା । ଅନ୍ୟ ଭାବରେ ସ୍ୱାମୀଙ୍କୁ ଅତି ମାତ୍ରାରେ ପ୍ରଶଂସା କରିବା କମଳାଙ୍କ ପ୍ରକୃତି ନ ଥିଲା । ସେ ଅବଶ୍ୟ

ସ୍ୱାମୀଙ୍କୁ ଶ୍ରଦ୍ଧା ଓ ସମ୍ମାନ କରୁଥିଲେ ଏବଂ ତାଙ୍କ ପ୍ରତିଷ୍ଠା ପ୍ରତିପତ୍ତିରେ ଗର୍ବ ଅନୁଭବ କରୁଥିଲେ । ବେଳେ ବେଳେ ନାନା ସ୍ଥାନରୁ ନାନା ଅନୁଷ୍ଠାନରୁ ଦିଆଯାଇଥିବା ଅଭିନନ୍ଦନ ପତ୍ର-ମାନଙ୍କରେ ଜବାହରଲାଲଙ୍କୁ 'ଭାରତର ରତ୍ନ' ବା ଅନ୍ୟ କିଛି ଉଲ୍ଲେଖ କରି ଯେଉଁସବୁ ପ୍ରଂଶସାପତ୍ର ଦିଆ ହେଉଥିଲା ସେ ବିଷୟ ନେଇ କମଳା ସ୍ୱାମୀଙ୍କୁ ବିଦ୍ରୂପ କରିବାକୁ ଛାଡ଼ୁ ନ ଥିଲେ ।

କମଳା, ନାରୀ ପୁରୁଷମାନଙ୍କ ସହିତ ସମାନ ଅଧିକାର ଦାବୀର ବିଶେଷ ପକ୍ଷପାତୀ ନ ଥିଲେ ଏବଂ ନାରୀ ଯେ ପୁରୁଷ ଉପରେ ସମ୍ପୂର୍ଣ୍ଣ ନିର୍ଭର କରୁ, ସେ କଥା ଆଦୌ ସ୍ୱୀକାର କରୁ ନ ଥିଲେ । ତଥାପି ଶହ ଶହ ବର୍ଷ ଧରି ହିନ୍ଦୁର ପରମ୍ପରା ପତିଭକ୍ତି ଓ ପତିପ୍ରାଣତାର ଆଦର୍ଶକୁ ଛାଡ଼ି ଦେବା ତାଙ୍କ ପକ୍ଷରେ ସମ୍ଭବ ହୋଇନାହିଁ । ୧୯୩୧ ମସିହାରେ କମଳା ଯେତେବେଳେ ଜେଲ ଗଲେ, ସେତେବେଳେ କହିଲେ "ମୁଁ ଆଜି ମୋର ସ୍ୱାମୀଙ୍କ ପଦ ଅନୁସରଣ କରି ଧନ୍ୟା ହୋଇଛି ।" ତାପରେ ଜେଲରୁ ଆସି ହାଇଦ୍ରାବାଦ ଯାଇଥିବା ବେଳେ ଥରେ ପରଦାନଶିନ ମହିଳାମାନଙ୍କ ଏକ ସଭାରେ ଭାଷଣ ଦେବାକୁ ଲୋକେ ଅନୁରୋଧ କରିବାରୁ, ସେ ନାରୀ ସ୍ୱାଧୀନତା ବିଷୟରେ ଖୁବ୍ ବକ୍ତୃତା ଦେଇଥିଲେ ।

କମଳାଙ୍କ ମନର ଦୃଢ଼ତା ଏବଂ ଉତ୍ସାହର ତେଜ ଏକାନ୍ତ ଅଦମ୍ୟ ଥିଲା । ଶାରୀରିକ ଅସୁସ୍ଥତା ବା ଅନ୍ୟ କୌଣସି ବାହ୍ୟ ପ୍ରତିବନ୍ଧକ ତାହା ଦବାଇ ପାରୁ ନ ଥିଲା । ଅସୁସ୍ଥ ଶରୀରରେ ସତ୍ୟାଗ୍ରହ ଆନ୍ଦୋଳନ ନିମନ୍ତେ ଅକ୍ଳାନ୍ତ ପରିଶ୍ରମ କରିବା ଦ୍ୱାରା ସେ ଶୀଘ୍ର ମୃତ୍ୟୁକୁ ବରଣ କରିଥିଲେ । ଜବାହରଲାଲ ଥରେ ଜେଲରୁ କମଳାଙ୍କୁ ଦେଖିବା ପାଇଁ ଆସିଥିଲେ । କମଳା ସ୍ୱାମୀଙ୍କୁ ଦେଖି ପ୍ରଶ୍ନ କଲେ, "ମୁଁ ଶୁଣୁଛି ତୁମେ ସରକାରଙ୍କୁ ଚୁକ୍ତି ଲେଖିଦେଇ

ମୋତେ ଦେଖିବାକୁ ଆସିଛ । ଏହା କଣ ସତ୍ୟ ? ନା, ତୁମେ କେବେହେଲେ କୌଣସି ଚୁକ୍ତି ଲେଖିଦେଅ ନାହିଁ ।" କମଳାଙ୍କ ମନର ଝାଣ ଏହି ଘଟଣାରୁ ଜଣାପଡ଼େ ।

୧୯୩୧ ସାଲରେ କମଳା ମଲାକ୍କା ଜେଲରେ ରହିଥିଲେ । ୧୯୩୪ ଠାରୁ କମଳାଙ୍କ ସ୍ୱାସ୍ଥ୍ୟ କ୍ରମେ ଖରାପ ହେବାକୁ ଲାଗିଲା । ଡାକ୍ତରମାନେ କମଳାଙ୍କୁ ଭାଓ୍ୱାଲି ସ୍ୱାସ୍ଥ୍ୟ ନିବାସକୁ ନେଇଥିଲେ ଏବଂ ସେଠାରେ କୌଣସି ପରିବର୍ତ୍ତନ ନ ହେବାରୁ ସେ ସୁଇଜରଲାଣ୍ଡର ବାଡ଼େନ୍‌ବାଲଠାକୁ ଯାତ୍ରା କଲେ । ଆତ୍ମୀୟ ସ୍ୱଜନ ଛାଡ଼ି କମଳା କିଛିଦିନ ଦୂର ଦେଶରେ ରହି ୧୯୩୬ ମସିହାରେ ଇହ ସଂସାରରୁ ବିଦାୟ ନେଲେ । ତାଙ୍କର ଗୋଟିଏ ବୋଲି ଝିଅ ଇନ୍ଦିରା, କଅଁଳ ଅବସ୍ଥାରେ ମାତୃହୀନା ହୋଇଛନ୍ତି । ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ଭାରତବାସୀ ସ୍ୱର୍ଗୀୟା ଦେଶସେବିକା କମଳାଙ୍କ ସ୍ମାରକ ରୂପେ ଗୋଟିଏ ଉତ୍କୃଷ୍ଟ ଧରଣର ଚିକିତ୍ସାଳୟ ପ୍ରତିଷ୍ଠା କରି ଏହି ଅଦ୍ୱିତୀୟା ଦେଶପ୍ରାଣା ରମଣୀଙ୍କ ପ୍ରତି ଶ୍ରଦ୍ଧା ଏବଂ କୃତଜ୍ଞତା କିଯତ୍‌ ପରିମାଣରେ ପ୍ରକାଶ କରିଛନ୍ତି ।

---

# ଡାକ୍ତର ଆନନ୍ଦୀବାଈ ଯୋଶୀ

[ ଅନୁବାଦକ ହେମଲତା ମାନସିଂହ ]

ମହାକାଳର ଅତଳ ଗହ୍ବରରେ କେତେ ଜୀବନ, କେତେ ସଭ୍ୟତା ଯେ ହଜି ଯାଇଛି କିଏ ତାର ଖବର ରଖୁଛି । ଯେଉଁ ଜୀବନକୁ ସମସାମୟିକ କାଳ ଆଦର କରୁଥିଲା, ଅନନ୍ତକାଳ ହୁଏତ ତାର କୌଣସି ସ୍ମୃତିକୁ ରଖି ପାରିଲାନି । ପୁଣି ସମସାମୟିକ କାଳ ଯାହାଙ୍କୁ ଉପେକ୍ଷା କରୁଥିଲା, ଭାବୀ କାଳରେ ସେ ହୁଏତ ପାଏ ବିପୁଳ ସମ୍ମାନ । ବଞ୍ଚି ଥାଉଁ ଥାଉଁ ମଣିଷ ଚାହେଁ ଉତ୍ସାହବାଣୀ, ଚାହେଁ ବରମାଲ୍ୟ, ସେ ଚାହେଁ ତାର ଜୀବନଟାକୁ ଘେରି ରହୁ ମଧୁର ଗୁଞ୍ଜନ । ଯେ, ଏହା ନ ପାଏ, ସେ ବଡ଼ ହତଭାଗ୍ୟ, ତେଣୁ ସମସାମୟିକ କାଳର ଉପେକ୍ଷା ମଣିଷକୁ ଦିଏ ଅପରିସୀମ ବେଦନା । ବହୁ ପ୍ରଶଂସିତ ମାନବ ସମସାମୟିକ କାଳଠାରୁ ପାଉଛି ବହୁ ଜୟମାଲ୍ୟ—ଦେଶ ଓ ବିଦେଶରୁ ମଧ୍ୟ । ସେଇ ମାନବ ହୁଏ ଭବିଷ୍ୟକାଳର ଉପେକ୍ଷିତ । ଏଇ ଆଗାମୀ କାଳର ଉପେକ୍ଷା ସେ ଅନୁଭବ କରେ ନାହିଁ । କିନ୍ତୁ ଯେଉଁ ସମାଜ, ଯେଉଁ ସଭ୍ୟତା ତାକୁ ଭୁଲି ଯାଇଛି,—ଅନନ୍ତକାଳ ତାର ଯେଉଁ ଆଦର୍ଶ, ଯେଉଁ ଦାନକୁ ରଖି ପାରିଲାନି, ତାହା ସମାଜ ଏବଂ ଦେଶର କଳଙ୍କ । ଏହିପରି ଜଣେ ମହୀୟସୀ ନାରୀର କଥା ମନେ ପଡ଼େ । ଯିଏ ସମସାମୟିକ କାଳରେ ସଂପୂର୍ଣ୍ଣ ଉପେକ୍ଷିତା ନ ହେଲେହେଁ ଆଜି ସେ ଉପେକ୍ଷିତା ।

ଡାକ୍ତର ଆନନ୍ଦୀବାଈ ଯୋଶୀଙ୍କ ନାମ ଆମ ନିକଟରେ ବିଶେଷ ପରିଚିତ ନୁହେଁ । ଯେଉଁ ମହାରାଷ୍ଟ୍ରର କନ୍ୟା ଜୀଜାବାଈ ଦିନେ ସମଗ୍ର ମହାରାଷ୍ଟ୍ରର ଆରାଧ୍ୟା ଦେବୀ ସ୍ୱରୂପା ଥିଲେ, ସେଇ ମହାରାଷ୍ଟ୍ରର କନ୍ୟା ଆନନ୍ଦୀବାଈ ଶିକ୍ଷା, ସଂଯମ, ଚରିତ୍ରମାଧୁର୍ଯ୍ୟରେ ଥିଲେ ଯେ କୌଣସି ଦେଶର ଆଦର୍ଶ ସ୍ଥାନୀୟା ନାରୀ । ୧୮୬୫ ଖ୍ରୀଷ୍ଟାବ୍ଦରେ ପୁନାରେ ତାଙ୍କର ଜନ୍ମ । ତାଙ୍କ ପିତା ଗଣପତ ରାଓ ଧର୍ମନିଷ୍ଠ, ଅମାୟିକ ଓ ଶାନ୍ତ ପ୍ରକୃତିର ଲୋକ ଥିଲେ । ଆନନ୍ଦୀବାଈଙ୍କର ପ୍ରକୃତ ନାମ ଯମୁନାବାଈ । ମହାରାଷ୍ଟ୍ରୀୟ ରୀତି ଅନୁସାରେ ବିବାହ ପରେ ତାଙ୍କର ନାମ ହେଲା ଆନନ୍ଦୀବାଈ । ଏଇ ନାମରେ ସେ ଥିଲେ ପରିଚିତା । ସ୍ୱାଭାବିକ ଉଜ୍ଜ୍ୱଳ ପ୍ରତିଭା ଓ ଦୃଢ଼ତା ନେଇ ସେ ଜନ୍ମ ହୋଇଥିଲେହେଁ, ସିଏ ଶୈଶବରେ ଲେଖାପଢ଼ାରେ ନିତାନ୍ତ ଅମନୋଯୋଗୀ ଥିଲେ । ବାଳିକା ବୟସରେ ଗୋପାଳ ବିନାୟକ ଯୋଶୀଙ୍କ ସହିତ ତାଙ୍କର ବିବାହ ହୋଇଥିଲା । ତାଙ୍କ ସ୍ୱାମୀ ଥିଲେ ଉଦାର ମତାବଲମ୍ବୀ, ସ୍ତ୍ରୀ ଶିକ୍ଷାର ବିଶେଷ ପକ୍ଷପାତୀ । କହିବାକୁ ଗଲେ ତାଙ୍କର ଏକାନ୍ତ ପ୍ରଚେଷ୍ଟାରେ ଆନନ୍ଦୀବାଈଙ୍କର ଶିକ୍ଷା ସଫଳ କାମ ହୋଇଥିଲା ।

ଗୋପାଳ ରାଓ ଡାକ ବିଭାଗରେ କାର୍ଯ୍ୟ କରୁଥିଲେ । ତେଣୁ ଆନନ୍ଦୀବାଈଙ୍କୁ ସ୍ୱାମୀ ସହିତ ନାନା ଦେଶ ବୁଲିବାକୁ ପଡୁଥିଲା । ସାଂସାରିକ କାର୍ଯ୍ୟରେ ଅନଭିଜ୍ଞା ଆନନ୍ଦୀବାଈଙ୍କୁ ସେ ସମୟରେ ବହୁତ କଷ୍ଟ ସ୍ୱୀକାର କରିବାକୁ ପଡ଼ିଲା । ପୂର୍ବରୁ ରନ୍ଧନାଦି କାର୍ଯ୍ୟ ସେ କିଛି ଜାଣି ନ ଥିଲେ । ଏହି ସମୟରେ ସେ ବିଷୟରେ ମଧ୍ୟ ସେ ଦକ୍ଷତା ଲାଭ କଲେ । ତାଙ୍କୁ ସ୍ୱାବଲମ୍ବୀ ଓ ସାହସୀ କରିବା ପାଇଁ ତାଙ୍କ ସ୍ୱାମୀ ତାଙ୍କୁ ପ୍ରାୟ ଏକାକୀ ଛାଡ଼ି ଅନ୍ୟତ୍ର ଚାଲି ଯାଉଥିଲେ ।

ମହାରାଷ୍ଟ୍ର ଦେଶରେ ପରଦା ପ୍ରଥା ଖୁବ କଠୋର ନୁହେଁ । ତଥାପି ଆନନ୍ଦୀବାଈ ଯେତେବେଳେ ସ୍ୱାମୀ ସହିତ ସମୁଦ୍ରକୂଳକୁ ବୁଲିବାକୁ ଯାନ୍ତି, ଅନ୍ୟାନ୍ୟମାନେ ତାଙ୍କୁ ଅପମାନିତ କରନ୍ତି । ସେ କିନ୍ତୁ ଏ ଅପମାନରେ ବ୍ୟଥିତା ହେଲେହେଁ ନୀରବରେ ସମସ୍ତ ସହ୍ୟ କରୁଥିଲେ । ଆନନ୍ଦୀବାଈ ସ୍ୱାମୀଙ୍କ ସାହାଯ୍ୟରେ ମାରାଠୀ, ସଂସ୍କୃତ ପ୍ରଭୃତ ଭାଷାରେ ବିଶେଷ ଦକ୍ଷତା ଲାଭ କରିଥିଲେ । ତାଙ୍କର ଇଂରେଜୀ ଶିକ୍ଷା ଆରମ୍ଭ ହୁଏ ବୋମ୍ବାଇର ମିଶନାରୀ ସ୍କୁଲରେ । ପରେ ସେ ଇଂରେଜୀ ଭାଷାରେ ମନୋଯୋଗୀ ହୋଇ ପଢ଼ିଲେ ଏବଂ ଅଧ୍ୟୁତ୍ତ କଲେ ମଧ୍ୟ । ଏଥିପାଇଁ ସେ ବହୁତ ପ୍ରଶଂସା ଲାଭ କରିଛନ୍ତି । ଆନନ୍ଦୀବାଈ, ସ୍ୱାମୀଙ୍କ ସହିତ ଶ୍ରୀରାମପୁରରେ ଥିବା ସମୟରେ ସେଠା ମିଶନାରୀମାନଙ୍କ ସହିତ ଘନିଷ୍ଠଭାବରେ ମିଶିବାର ସୁଯୋଗ ପାଇଥିଲେ । ତଦ୍ୱାରା ସେ ଚିକିତ୍ସା ଶାସ୍ତ୍ର ଅଧ୍ୟୟନ କରିବା ପାଇଁ ଆମେରିକା ଯିବାକୁ ସଂକଳ୍ପ କଲେ । ସେତେବେଳେ ଭାରତୀୟ ମହିଳାମାନେ ଉପଯୁକ୍ତ ଡାକ୍ତରାଣୀ ଅଭାବରେ ବଡ଼ କଷ୍ଟ ପାଉଥିଲେ । ଏହି ଅଭାବ ସେହି ଉନ୍ନତମନା ଦମ୍ପତି ବିଶେଷ ଭାବରେ ଅନୁଭବ କଲେ । ତେଣୁ ଆନନ୍ଦୀବାଈ ଶ୍ରୀମତୀ କାର୍ପେଣ୍ଟରଙ୍କୁ ଲେଖିଥିଲେ, ଚିକିତ୍ସା ବିଦ୍ୟା ଶିକ୍ଷାକରି ଆମଦେଶର ଗୋଟିଏ ପ୍ରଧାନ ଅଭାବ ଦୂର କରିବାକୁ ମୁଁ ନିତାନ୍ତ ବ୍ୟଗ୍ର ହୋଇ ପଡ଼ିଛି । ତାଙ୍କର ଅନ୍ୟ ଏକ ଉଦ୍ଦେଶ୍ୟ ଥିଲା— ପାଶ୍ଚାତ୍ୟ ଓ ଦେଶୀୟ ଚିକିତ୍ସା ବିଜ୍ଞାନ ସମନ୍ୱୟରେ ବର୍ତ୍ତମାନ ଅବସ୍ଥାର ଉପଯୋଗୀ ଚିକିତ୍ସା ପ୍ରଣାଳୀର ପ୍ରବର୍ତ୍ତନ କରିବା । ନାନା କାରଣରୁ ଗୋପାଳ ରାଓ ଛୁଟି ପାଇଲେ ନାହିଁ । ସେ ଶ୍ରୀମତୀ ଯୋଶୀଙ୍କୁ ଏକାକୀ ବିଦେଶ ଯିବାକୁ କହିଲେ । କିନ୍ତୁ ତାଙ୍କର ଆତ୍ମୀୟ ସ୍ୱଜନଗଣ ନାନା ଭାବରେ ତାଙ୍କୁ ବାଧା ଦେବାକୁ

ଲାଗିଲେ । ତାଙ୍କ ଚରିତ୍ରରେ କଳଙ୍କ ଲଗାଇବାକୁ ମଧ୍ୟ ଛାଡ଼ିଲେ ନାହିଁ । ଅନେକଙ୍କର ଧାରଣା ହେଲା ଯେ, ସେ ଖ୍ରୀଷ୍ଟିଆନ ହୋଇଯିବେ । ତାଙ୍କୁ ସମାଜଚ୍ୟୁତ କରିବାକୁ ଧମକ ମଧ୍ୟ ଦେଲେ । ଆନନ୍ଦୀବାଈ ପ୍ରତିବାଦ କରି କହିଥିଲେ ଯେ, ସେ ମନପ୍ରାଣରେ ହିନ୍ଦୁ ରହିବେ, ତଥାପି ଯଦି ତାଙ୍କୁ ସମାଜଚ୍ୟୁତ କରାଯାଏ ସେଥିପାଇଁ ସେ ଭୟ କରନ୍ତି ନାହିଁ ।

୧୮୮୩ ଖ୍ରୀଷ୍ଟାବ୍ଦ ୭ ତାରିଖ ଏପ୍ରିଲ ମାସରେ ଶ୍ରୀମତୀ ଜନ୍‌ସନ ନାମକ ଏକ ଖ୍ରୀଷ୍ଟିଆନ୍ ମହିଳା ସଙ୍ଗରେ ସଂପୂର୍ଣ୍ଣ ଅନାତ୍ମୀୟ ଭାବରେ ଏକାକିନୀ ସତର ବର୍ଷର ବାଳିକା ଆନନ୍ଦୀବାଈ ସୁଦୂର ଆମେରିକା ଯାତ୍ରା କରିଥିଲେ । ବର୍ତ୍ତମାନ ଅବଶ୍ୟ ବିଦେଶ ଯିବା ସେପରି ଦୁରୂହ ବ୍ୟାପାର ନୁହେ । କିନ୍ତୁ ସେ ସମୟକୁ ଚାହିଁ ଆମେମାନେ ବିଚାର କଲେ ବୁଝି ପାରିବା ଯେ, ସତ୍ ଉଦ୍ଦେଶ୍ୟ ମନୁଷ୍ୟକୁ ସତ୍ କାର୍ଯ୍ୟରେ କିପରି ପ୍ରେରଣା ଦିଏ, ପ୍ରାଣରେ କିପରି ଆଣେ ସାହସ ଓ ଉଦ୍ଦୀପନା । ସେ ଦିନ ସ୍ୱାମୀ ବ୍ୟତୀତ ଅନ୍ୟ କେହି ତାଙ୍କୁ ସହାସ୍ୟବଦନରେ ଉତ୍ସାହ ପ୍ରଦାନପୂର୍ବକ ବିଦାୟ ଅଭିବାଦନ ଜଣାଇ ନାହିଁ । ସେଇ ସୁଦୂର ବିଦେଶରେ ନିଜ ଦେଶୀୟ ଭାବରେ ଚଳିବା ପାଇଁ ଆରାଧ୍ୟ ଦେବଦେବୀମାନଙ୍କ ପ୍ରତିମୂର୍ତ୍ତି ଓ ଶାଢ଼ୀ ବ୍ଲାଉଜ ସଙ୍ଗରେ ନେଇ ଯାଇଥିଲେ । ବିଦ୍ୟାଲାଭ ପାଇଁ କେବଳ ବିଦେଶ ଗମନ । ଜାହାଜରେ ଶ୍ରୀମତୀ ଜନ୍‌ସନ୍ ତାଙ୍କୁ ଖ୍ରୀଷ୍ଟଧର୍ମ ଗ୍ରହଣ ପାଇଁ ଅକ୍ଳାନ୍ତ ଚେଷ୍ଟା କରି ବିଫଳ ମନୋରଥ ହୋଇ ନାନା ଭାବରେ ଦୁର୍ବ୍ୟବହାର କରିଥିଲେ । କିନ୍ତୁ କୌଣସିଥିରେ ତାଙ୍କୁ ସଂକଳ୍ପଚ୍ୟୁତ କରାଇ ପାରିନାହାନ୍ତି ।

ଆମେରିକାରେ ପହଞ୍ଚି ଶ୍ରୀମତୀ କାର୍ପେଣ୍ଟରଙ୍କର ଘରେ ଆନନ୍ଦୀ ବାଈ ଭାରତୀୟ ରୀତିରେ ତାଙ୍କର କନ୍ୟାପରି ଚଳୁଥିଲେ । ତାଙ୍କ

ଘରେ ସେ ଅନେକ ଭାରତୀୟ ଗୀତମାନଙ୍କର ପ୍ରଚଳନ କରାଇଥିଲେ । ସେ ଶୀତ ପ୍ରଧାନ ଦେଶରେ ଶାଢ଼ୀ ପିନ୍ଧି ଓ ନିଜେ ରାନ୍ଧି ଆହାର କରୁଥିଲେ । ଯେଉଁମାନେ ତାଙ୍କ ନିକଟ ସମ୍ପର୍କରେ ଆସିଛନ୍ତି ସେମାନେ ତାଙ୍କର ଭକ୍ତି ସଙ୍ଗୀତ ଶ୍ରବଣ କରି ମୁଗ୍ଧ ହୋଇଛନ୍ତି । ସମ୍ପୂର୍ଣ୍ଣ ଭାରତୀୟ ଭାବରେ ଚଳିଲେ ମଧ୍ୟ କେହି ତାଙ୍କୁ କୌଣସି-ଥିରେ ଅନଭିଜ୍ଞା ବୋଲି କହୁନ ।

ଆନନ୍ଦୀବାଈ ଫିଲାଡେଲଫିଆ ଚିକିତ୍ସା ବିଦ୍ୟାଳୟରେ ଗ୍ରିବର୍ଷ ଶିକ୍ଷା ପାଇବା ପାଇଁ ଭର୍ତ୍ତି ହୋଇଥିଲେ । ଯଥା ସମୟରେ ସେ କୃତତ୍ତ୍ୱସହ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । ୧୮୮୬ ସାଲ ମାର୍ଚ୍ଚ ୧୨ ତାରିଖରେ କଲେଜରେ ଅଧ୍ୟକ୍ଷ, ଅଧ୍ୟାପକଗଣ ଓ ସମ୍ଭ୍ରାନ୍ତ ବ୍ୟକ୍ତିମାନେ ସମ୍ମିଳିତ ହୋଇ ମହାସମାରୋହ ସହିତ ତାଙ୍କୁ ଏମ. ଡି. ଉପାଧିର ସନନ୍ଦ ଦାନ କରିଥିଲେ । ଆଜି ଭାରତୀୟ ନାରୀମାନଙ୍କ ପକ୍ଷରେ ବିଶ୍ୱବିଦ୍ୟାଳୟରୁ ଉପାଧି ପାଇବା ଆଶ୍ଚର୍ଯ୍ୟଜନକ ଘଟଣା ନୁହେଁ, କିନ୍ତୁ 'ସେଇ ଊନବିଂଶ ଶତାବ୍ଦୀରେ ଜଣେ ଭାରତୀୟା ନାରୀପକ୍ଷରେ ଏହା ସହଜସାଧ୍ୟ ନ ଥିଲା । ସେ ଧନୀର କନ୍ୟା କିମ୍ବା ବଧୂ ନ ଥିଲେ । ସ୍ୱାମୀର ସାମାନ୍ୟ ଅର୍ଥ ଓ ଅନ୍ୟ ପାଞ୍ଚଜଣଙ୍କର ସହାୟତାରେ ବିଦେଶରେ ଅଧ୍ୟୟନ କରିବାକୁ ସମର୍ଥ ହୋଇଥିଲେ ।

ସେ ଯେ ଭାରତବର୍ଷକୁ ଓ ତାଙ୍କର ନିଜ ସମାଜକୁ କେତେ ଭଲ ପାଉଥିଲେ, ତାହା ତାଙ୍କର ଲିଖିତ କେତେକ ପତ୍ରରୁ ଜଣାପଡ଼େ । ସେ ଯେତେବେଳେ ଆମେରିକାରେ ପଢ଼ୁଥିଲେ ଗୋପାଳ ରାଓଙ୍କୁ ସମାଜରେ ନାନା ଭାବରେ ଲାଞ୍ଛିତ ହେବାକୁ ହୋଇଥିଲା । ଗୋପାଳ ରାଓ ହିନ୍ଦୁ ସମାଜ ପ୍ରତି ବିରକ୍ତ ହୋଇ

ଆମେରିକାରେ ରହିବାକୁ ଇଚ୍ଛା ପ୍ରକାଶ କରି ଆନନ୍ଦୀବାଈଙ୍କୁ ଚିଠି ଲେଖିଥିଲେ । ଉତ୍ତରରେ ଆନନ୍ଦୀବାଈ ଦୁଃଖିତା ହୋଇ ଲେଖିଥିଲେ 'ହିନ୍ଦୁବୋଲି ମୁଁ ଗର୍ବ ଅନୁଭବ କରେ, ଭଲମନ୍ଦ ସବୁ ଦେଶ ଓ ସବୁ ସମାଜରେ ଅଛି । ମୁଁ ସ୍ୱଦେଶ ପରିତ୍ୟାଗର ପକ୍ଷପାତିନୀ ନୁହେଁ । ଯଦିଓ ଏଠାରେ ମୋର କୌଣସି ଅସୁବିଧା ବା କଷ୍ଟ ନାହିଁ, ତଥାପି ମୁଁ ନିଜ ଦେଶକୁ ଫେରିଯିବାକୁ ଚାହେଁ । ଭାରତୀୟ ସ୍ତ୍ରୀମାନଙ୍କର କୌଣସି ଉପକାରରେ ଲାଗି ପାରିଲେ ମୁଁ ନିଜକୁ ଧନ୍ୟ ମନେ କରିବି । ଅନ୍ୟ ଦେଶ ଅପେକ୍ଷା ଭାରତର ଦାବୀ ମୋ ଉପରେ ଅଧିକ । ଏ ଦେଶରେ ସ୍ଥାୟୀ ଭାବରେ ରହି ଆପଣ ନିଜ ଦେଶବାସୀଙ୍କୁ କ'ଣ ଶିକ୍ଷା ଦେବେ ? ସାଧାରଣ ଅନୁକରଣଯୋଗ୍ୟ ଆଚରଣ କରିବାର ଉପଯୁକ୍ତ ସ୍ଥାନ ଭାରତବର୍ଷ, ଆମେରିକା ନୁହେଁ ।' ଆନନ୍ଦୀବାଈ ଆନ୍ତରିକ କାମନା କରୁଥିଲେ ଭାରତୀୟମାନେ ଶିକ୍ଷା, ଜ୍ଞାନ, ପଦମର୍ଯ୍ୟାଦାରେ ୟୁରୋପୀୟମାନଙ୍କର ସମକକ୍ଷ ହୁଅନ୍ତୁ । ଯେତେବେଳେ ଇଲ୍‌ବାର୍ଟ ବିଲ୍ ପାଶ୍ ହୋଇଥିଲା, ସେ ଆମେରିକାରେ ଥାଇ ଆନନ୍ଦ ଜଣାଇ ଥିଲେ । ତାଙ୍କ ସମୟରେ କେତେ ଜଣ ଭାରତୀୟ ଯୁବକ ଅଭାରତୀୟ ଆଚରଣ କରୁଥିବାରୁ ସେ ଲଜ୍ଜିତା ଓ ଦୁଃଖିତା ହୋଇଥିଲେ । ତାଙ୍କ ମତରେ ସେମାନେ ଦେଶର କଳଙ୍କ ସ୍ୱରୂପ । ଆନନ୍ଦୀବାଈଙ୍କର ଆନ୍ତରିକ ଦୃଢ଼ତା ଓ ସ୍ୱଦେଶ ପ୍ରେମ ଦେଖି ଜଣେ ପାଦ୍ରୀ ତାଙ୍କ ଶିଷ୍ୟମାନଙ୍କୁ କହିଥିଲେ 'ମିସେସ୍ ଯୋଶୀ ପ୍ରଥମେ ଯେଉଁଦିନ ଆମେରିକା ଆସିଥିଲେ, ସେଦିନ ଯେପରି ଥିଲେ, ଆଜିବି ସେପରି ଅଛନ୍ତି ।'

ଭାରତକୁ ଫେରି ହିନ୍ଦୁମହିଳାମାନଙ୍କ ପାଇଁ ଗୋଟିଏ ମେଡ଼ିକାଲ କଲେଜ ସ୍ଥାପନ କରିବାକୁ ତାଙ୍କର ପ୍ରଧାନ ଲକ୍ଷ୍ୟ

ଥିଲା । ସେ ଜୀବନର ପ୍ରତି ମୂହୂର୍ତ୍ତିକୁ ସଫଳ କରିବାକୁ ଚେଷ୍ଟା କରୁଥିଲେ । କିନ୍ତୁ ଦୁରାରୋଗ୍ୟ ବ୍ୟାଧି ତାଙ୍କ ଜୀବନ ପ୍ରଦୀପର ଆଲୋକଟିକୁ ଅତିଶୀଘ୍ର ନିର୍ବାପିତ କରିଦେଲା । ଆମେରିକାରେ ସେ ଅସୁସ୍ଥ ହୋଇ ପଡ଼ିଲେ ଏବଂ ସେହି ଅବସ୍ଥାରେ ଦେଶକୁ ଫେରି ଆସିଲେ । କୌଣସିଥିରେ ଭଲ ହୋଇ ପାରିଲେ ନାହିଁ । ମାତ୍ର ୨୧ ବର୍ଷ ବୟସରେ ସେ ମୃତ୍ୟୁମୁଖରେ ପଡ଼ିଲେ । ଶିକ୍ଷା ଜଗତରେ ଭାରତୀୟା ନାରୀମାନଙ୍କର ସେ ଥିଲେ ଅଗ୍ରନାୟିକା । ତାଙ୍କ ଶିକ୍ଷାର ସମାପ୍ତି ହୋଇଥିଲା, କିନ୍ତୁ ସାଧନାର ସମାପ୍ତି ହେଲା ନାହିଁ । ପ୍ରାଣରେ ଅତୃପ୍ତବାସନା ରଖି ସେ ଚାଲି ଯାଇଛନ୍ତି ।

---

# ସୁଶୀଳାର କରୁଣ ଜୀବନୀ

ଶ୍ରୀମତୀ ହେମଲତା ମାନସିଂହ

ପ୍ରଜାତନ୍ତ୍ର ଓ ସମାଜରେ ପ୍ରକାଶିତ ଶ୍ରୀଯୁକ୍ତା ମାଳତୀ ଚୌଧୁରୀଙ୍କ ଲେଖାରୁ ସୁଶୀଳାର ମୃତ୍ୟୁ ସମ୍ବାଦ ପାଇ ମୁଁ ଓ ମୋର ସ୍ୱାମୀ ଅତ୍ୟନ୍ତ ମର୍ମାହତ ହେଲୁଁ । ତାର ଜୀବନ ଏପରି କରୁଣ ହୋଇ ଉଠିଥିଲା ଯେ ଏ ମୃତ୍ୟୁ ତା ପାଇଁ ବିଧାତାର ଶ୍ରେଷ୍ଠ ଆଶୀର୍ବାଦ ବୋଲି ଧରାଯାଇ ପାରେ । କିନ୍ତୁ ଯିଏ ସୁଖର ସଂସାରରେ ଜାତ ହୋଇ ଶେଷରେ ବନ୍ଧୁବାନ୍ଧବମାନଙ୍କଠାରୁ ଦୂରରେ ଏକା ଏକା ପ୍ରାଣତ୍ୟାଗ କଲା, ତାର ଶେଷ ଉପରେ ଦୁଇବୁନ୍ଦା ଅଶ୍ରୁ ଢାଳିବା ପାଇଁ କେହି ଆତ୍ମୀୟ ପାଖରେ ନ ଥିଲେ ମନେକଲେ ମୋର ଚିତ୍ତ କଲବଲ ହୋଇ ଉଠୁଛି ।

କିନ୍ତୁ ସୁଶୀଳାର ମୃତ୍ୟୁରେ କଥା ସରିଗଲା ନାହିଁ । ତାର ଜୀବନର ଦୁଃଖ, ଦୁର୍ବିପାକ ଓ ପୁନର୍ଗଠନରୁ ମୋ ଦେଶର ବହୁ ହତଭାଗିନୀ ଭଗିନୀମାନଙ୍କର ଶିଖିବାର ଅଛି ଜାଣି ମୁଁ ତାର କଥା ଦେଶବାସୀଙ୍କ ନିକଟରେ ଟିକିଏ ବିସ୍ତାରିତ ଭାବରେ ଲେଖିବାକୁ ଯାଉଛି ।

ସୁଶୀଳା ମୋର ଖୁଡ଼ୁତାଶୁରଙ୍କ ପୁଅର ସ୍ତ୍ରୀ । ଏଇ ବଂଶର ବଧୂ । ଆଜ ଏ କଥା ପ୍ରକାଶ କରିବାକୁ ସଂକୋଚ ଲାଗୁନାହିଁ ।

କାରଣ ଘରେ ଥିଲେ ସେ କେବଳ ବନ୍ଧୁ ରୂପରେହିଁ ରହି ଯାଇଥାନ୍ତା; ବସ୍ତୁତଃ କ୍ଷେତ୍ର ପାଇ ତାର ଗୁଣର ଯେପରି ବିକାଶ ହେଉଥିଲା, ତା' ଅନ୍ତ ହୋଇପାରି ନ ଥାନ୍ତା । କିନ୍ତୁ ସେ ସମ୍ପୂର୍ଣ୍ଣ ବିକଶିତ ହେବା ପୂର୍ବରୁ ଅକାଳରେ ଝରିପଡ଼ିଲା ।

ସୁଶୀଳା ମୋର ସାନ ଯା ହେଲେ ମଧ୍ୟ ଆମେ ବାହାରେ ରହୁଥିବାରୁ ତାର ବିବାହର ପ୍ରାୟ ଦଶବର୍ଷ ପର୍ଯ୍ୟନ୍ତ ତା' ସଙ୍ଗେ ମୋର ଅଦୌ ଘନିଷ୍ଠ ପରିଚୟ ଘଟି ନ ଥିଲା । ଚିଠିପତ୍ରର ଆଦାନ ପ୍ରଦାନ ମଧ୍ୟ ନ ଥିଲା । ଅଥଚ ମୋର ପ୍ରବର୍ତ୍ତନାରେ ସୁଶୀଳାର ଦଦା ତାର ସ୍ୱାମୀର ଉଚ୍ଚଶିକ୍ଷା ପାଇଁ ପ୍ରଚୁର ଅର୍ଥ ସାହାଯ୍ୟ କରିଥିଲେ । ସୁଶୀଳା ପିତୃହୀନା ଥିବାରୁ ତାର ଦଦାହିଁ ତାର ବିବାହାଦିର ଦାୟିତ୍ୱ ଗ୍ରହଣ କରିଥିଲେ ।

କିନ୍ତୁ ହାୟ, ଏଇ ଉଚ୍ଚଶିକ୍ଷା ପାଇସାରିଲା ପରେ ତାର ସ୍ୱାମୀ ତାକୁ ଦୁରାରୋଗ୍ୟ ରୋଗର ବାହାନାରେ ପରିତ୍ୟାଗ କରି ଦ୍ୱିତୀୟା ସ୍ତ୍ରୀ ଗ୍ରହଣ କରିବାକୁ ପ୍ରସ୍ତାବ କଲେ । ମୁଁ ନାନାପ୍ରକାରରେ ଏହାର ବିରୋଧ କଲି । ସେହି ଦିନଠାରୁ ଯାହାଙ୍କୁ ମୁଁ ଭ୍ରାତୃତୁଲ୍ୟ ବୋଧ କରୁଥିଲି, ଯେ କି ମୋ ପାଖେ ପାଖେ ରହି ବିଦ୍ୟାଧ୍ୟୟନ କରିଥିଲେ, ତାଙ୍କ ସହିତ ଆମର ସମସ୍ତ ସମ୍ପର୍କ ଛିନ୍ନ ହୋଇଯାଇଛି ।

ତାପରେ ପ୍ରାୟ ବର୍ଷକ ପରେ ହଠାତ୍ ସୁଶୀଳାର ପତ୍ର ମୋ ନିକଟରେ ପହଞ୍ଚିଲା । ସୁଶୀଳା ଲେଖିଥିଲା ଯେ ତାର ଜୀବନ ବର୍ତ୍ତମାନ ଅନ୍ଧକାରମୟ । ସେ ତାର ଜ୍ୟେଷ୍ଠ ଭାଇମାନଙ୍କର ଗଳଗ୍ରହ ହେବାକୁ ଚାହେଁନା । ସେ କିପରି ଏ ଦୁଃଖମୟ ଜୀବନରୁ ଉଦ୍ଧାର ପାଇବ ?

ଆମ୍ଭେମାନେ ପ୍ରଥମେ ସ୍ତମ୍ଭିତ ହେଲୁ । ତାକୁ ଆଶ୍ୱାସନାପୂର୍ଣ୍ଣ ଚିଠି ଦେବା ସଙ୍ଗେ ସଙ୍ଗେ ଶ୍ରୀମତୀ ମାଳତୀ ଦେବୀଙ୍କ ନିକଟକୁ

ପତ୍ର ଦେଲେ ଯେ ସେ ଏଇ ଦୁର୍ବିପାକଗ୍ରସ୍ତା ନାରୀଙ୍କୁ ତାଙ୍କ ମହିଳା ଶିକ୍ଷାଶ୍ରମରେ ସ୍ଥାନ ଦିଅନ୍ତୁ । ଏଇ ମହିଳାଶିକ୍ଷାଶ୍ରମରେ ମାଳତୀ ପରି ଅନୁନ୍ନତ ସ୍ଥାନର ଏକ ଅର୍ଦ୍ଧଶିକ୍ଷିତା, ସ୍ୱାମୀ-ପରିତ୍ୟକ୍ତା ଦୁଃଖିନୀ ନାରୀର ଜୀବନ ଜନ୍ମାନ୍ତର ଲାଭ କରି ହସି ଉଠିଥିଲା, ଏବଂ ମାନବ ସେବାରେ ।

ମହିଳାଶ୍ରମକୁ ଆସିଲା ପରେ ମଧ୍ୟ ତା'ର ସ୍ୱାମୀ ମାଳତୀ ଦେବୀଙ୍କୁ ନାନା ଧମକ ଚମକ ଦେଇ ସ୍ୱାମୀତ୍ୱ ଜାରି କରି ଏବଂ ତାର ଦୁରାରୋଗ୍ୟ ରୋଗ ଥିବାର ଜଣାଇ ପତ୍ର ଲେଖିଲେ । ତାର ପୁନର୍ବାର ଡାକ୍ତରୀ ପରୀକ୍ଷା ହେଲା ଏବଂ ଏହା ଆଶ୍ରମରେ ପ୍ରଚାର ହେବା ଫଳରେ ସେ ବୋଧ କଲା ଯେପରି ସମସ୍ତେ ତାଙ୍କୁ ଘୃଣା କରୁଛନ୍ତି । ସେତେବେଳେ ସେ ଘୋର ଅଶାନ୍ତିରେ କାଳ କାଟିଛି । ମନର ଅସ୍ଥିରତାରେ ଯେଉଁ ପତ୍ର ଦେଇଥିଲା ତାର କିଛି ଅଂଶ ଉଦ୍ଧାର କଲି ।

ଅତି ଆଦରର ଅପା ମୋର,

ବଡ଼ ଦୁଃଖର ବିଷୟ ଏଇ ନିକଟରେ 'ଘ' ବାବୁ ମାଳତୀ ଦେବୀଙ୍କ ନିକଟକୁ ଲେଖିଛି ଯେ ସୁଶୀଳା ଭାରି ଖରାପ, ତା ଦେହରେ ଖରାପ ରୋଗ ଅଛି × × ×

ବର୍ତ୍ତମାନ ମୁଁ ମହା ଅଶାନ୍ତିରେ ଅଛି । ଏଇ କେତେ ଦିନ ହେଲା ସମସ୍ତ ଦୁଃଖ ମନରୁ ଦୂର କରି ନିଜ ଗୋଡ଼ରେ ଠିଆ ହେବା ପାଇଁ ପ୍ରସ୍ତୁତ ହୋଇ ପଡ଼ିଥିଲି । ପୁଣି ସେଇ ଅବସ୍ଥାରେ ମନ ଅସ୍ଥିର ହେଉଛି । ମୁଁ ଏଠାକୁ ଆସିବାର ଦୁଇ ମାସ ପରେ ମୋତେ ଡାକ୍ତରୀ ପରୀକ୍ଷା କରିଥିଲେ ଯେ, କୌଣସି ରୋଗ ନାହିଁ ।

ପୁଣି ଆଉ ଥରେ ପରୀକ୍ଷା କରିବେ ବୋଲି କହୁଛନ୍ତି ଏବଂ ମତେ ଭାରି ଘୃଣା କରୁଛନ୍ତି ।

× × × ×.

ବର୍ତ୍ତମାନ ଆପଣ ମୋତେ ଏଠାକୁ ଆଣାଇ ତ ଅଶାନ୍ତ ଜୀବନରେ ଶାନ୍ତି ଦେଇଥିଲେ । ପୁଣି ଯଦି ଆପଣ ଏ ବିଷୟରେ ଚେଷ୍ଟା ନ କରିବେ ତା'ହେଲେ ମୁଁ କଣ କରିବି । ଏ ବିଷୟ ନନାଙ୍କୁ କହିବେ ଏବଂ ଶୀଘ୍ର ପ୍ରତିକାର କରିବେ । ମୋର ମନ ଭଲ ନାହିଁ । ଫେରନ୍ତା ଡାକକୁ ଚାହିଁ ରହିଲି ।

ଆପଣଙ୍କର

ସ୍ନେହର ସୁଶୀଳା

× × × ×

ସୁଶୀଳା ଅନୁଗୁଳ ଆଶ୍ରମରେ ରହିବାର କେତେ ମାସ ପରେ ପୂଜା ଅବକାଶରେ ସମ୍ବଲପୁର ଆସିଥିଲି । ସେହି ହେଉଛି ତା'ସହିତ ଆମର ପ୍ରଥମ ସାକ୍ଷାତ । ଦଶହରା ପୂଜା ତ ଆମର ଶ୍ରେଷ୍ଠ ପୂଜା । କିନ୍ତୁ ପୂଜାର ଦୁଇ ତିନିଦିନ ପୂର୍ବରୁ ସେ ଆଶ୍ରମକୁ ଫେରି ଯାଇଥିଲି । ଯେତେ କହିଲେ ବି ରହି ନ ଥିଲି । ଆଶ୍ରମର କଠୋର ନିୟମଶୃଙ୍ଖଳାକୁ ସେ ମନପ୍ରାଣରେ ମାନି ନେଇଥିଲି । ତା'ପରେ ଆଉ ଥରେ ସେ କେତେକ ଆଶ୍ରମ ଶିକ୍ଷାର୍ଥିନୀମାନଙ୍କ ସହିତ କୁଷ୍ଠରୋଗ ଚିକିତ୍ସା ଶିଖିବା ପାଇଁ ଏଠାକୁ ଆସିଥିଲି । ସେଇ ହେଉଛି ଦ୍ୱିତୀୟ ଓ ଶେଷ ସାକ୍ଷାତ, ମୋର ଏଇ ଦୁଃଖିନୀ ଯା ସାଥିରେ । ବାଘମାରି ଗ୍ରାମ କେନ୍ଦ୍ରରୁ ତାର ଶେଷ ପତ୍ରରେ ସେ ଆମ ପାଖକୁ ଆସିବାକୁ ଇଚ୍ଛା ପ୍ରକାଶ କରିଥିଲି । ତା' ଆଉ ପୂର୍ଣ୍ଣ ହୋଇ ପାରିଲି ନାହିଁ ।

ସ୍ୱାମୀ ପରଲୋକଗତା ହେଲା ପରେ ସୁଶୀଳା ତାର ବିବାହର ସମସ୍ତ ଚିହ୍ନ ତା' ଜୀବନରୁ ପୋଛି ଦେବାକୁ ଚେଷ୍ଟା କରିଥିଲା । ମୋ ପିଲାଙ୍କର ସେ ହେଉଛନ୍ତି ପ୍ରଥମ ଖୁଡ଼ି । ପିଲାଏ ତାକୁ ଖୁଡ଼ି ସମ୍ବୋଧନ କରିବାରୁ ସେ ନାହିଁକରି ଅପା ଡାକିବାକୁ କହିଥିଲା ।

ଆଶ୍ରମରୁ ଉତ୍ତୀର୍ଣ୍ଣା ହୋଇ ସେ ଯେତେବେଳେ ଗଞ୍ଜାମର ଦୁର୍ଗମ ଆଦିବାସୀ ମାଳ ଭିତରେ ଏକାକିନୀ ସେବା କର୍ମ ଆରମ୍ଭ କଲା, ସେତିକିବେଳେ ଆମେ ତାର ଜୀବନର ପୂର୍ଣ୍ଣତମ ଓ ମଧୁରତମ ବିକାଶ ଦେଖିବାକୁ ପାଇଲୁ ।

ସେଇ ମାଳ ଅଞ୍ଚଳରେ ତାକୁ ବାରମ୍ବାର ମାଲେରିଆ ହେଉଥିବା କଥା ସେ ଲେଖୁଥିଲା । ଭଲ ହେବାର ସମ୍ବାଦ ମଧ୍ୟ ଦେଉଥିଲା । ଆମେ ଆଶା କରୁଥିଲୁ ଯେ ସେ କିଛି କାଳ ପରେ ଆଖପାଖରେ ଆସି କାର୍ଯ୍ୟ କରିବ । କିନ୍ତୁ ହାୟ, ତାକୁ ଜୀବନରେ ଆଉ ଥରେ ଭେଟିବାର ଭାଗ୍ୟ ହେଲା ନାହିଁ ।

ସେଇ ମାଳ ଅଞ୍ଚଳରୁ ତାର ଲିଖିତ ଦୁଇଟି ଚିଠିର କେତେକାଂଶ ଏଠାରେ ଉଲ୍ଲେଖ କଲି । ତାହାହେଲେ ସେ ସ୍ଥାନର ସମ୍ୟକ୍ ପରିଚୟ ମିଳିବ ।

ଲକ୍ଷ୍ମୀବ କେନ୍ଦ୍ର

୨୮।୭।୪୩

ଅତି ଆଦରର ଅପା ମୋର,

ମୋର ସୁଦୂର ପ୍ରଣାମ ଗ୍ରହଣ କରିବେ । ନନାଙ୍କୁ ଯଥା ମାନ୍ୟ ଜଣାଇ ଦେବେ । × × × ଏଠାକୁ ଆସିଲା ବେଳେ ଘନ ଜଙ୍ଗଲ ପାହାଡ଼ ଦେଇ ୨୦ ମାଇଲ ରାସ୍ତା ଚାଲି ଆସିବାକୁ ପଡ଼ିଲା । ମୁଁ ବର୍ତ୍ତମାନ ଏପରି ଜାଗାରେ ଆସି ପହଞ୍ଚିବି ବୋଲି ଦିନେହେଲେ

ଭାବ ନ ଥିଲି । ଏଠାର ଲୋକମାନେ ସମସ୍ତେ ସଉରା । ଓଡ଼ିଆ କଥା ବୁଝୁନାହାନ୍ତି । ଚତୁଃପାର୍ଶ୍ୱରେ ପାହାଡ଼ ଘାଟି ରହିଛି । ଘରୁ ବାହାରିଲେ ପାହାଡ଼ ଉପରେ ଯିବାକୁ ହେଉଛି । ଏଠାରେ କୌଣସି ବ୍ୟାବହାରିକ ଦ୍ରବ୍ୟ କିଣିବାକୁ ଆଦୌ ମିଳୁନାହିଁ । ଏମାନେ ଲୁଗା ପିନ୍ଧା ଏବଂ ଖାଦ୍ୟ ଜିନିଷ ଘୋଷାରି କରି ଖାଇବା ଇତ୍ୟାଦି ଆଦୌ ଜାଣିନାହାନ୍ତି । ଏଠାରେ ଚିଠିପତ୍ର ଯିବା ଆସିବାରେ ସୁବିଧା ନାହିଁ । ଆପଣ ଚିଠି ଦେଲେ ହୁଏତ ୧୫ ଦିନରେ ପାଇବି କି ନା ସନ୍ଦେହ । ମୋର କିଛି ଭୁଲ ଥିଲେ କ୍ଷମା କରିବେ । ଆଶା କରୁଛି ପତ୍ର ପାଇ ପତ୍ର ଖଣ୍ଡିଏ ନିଶ୍ଚୟ ଦେବେ । ଇତି ।

ଆପଣଙ୍କର

ସ୍ନେହର ସୁଶୀଳା

---

ଲମ୍ବୁର

ତା ୮।୮।୫୩

ଅପା, ଏମାନଙ୍କ ଜୀବନଯାତ୍ରା ବିଷୟରେ କଣ ଲେଖିବି ? ଏମାନେ ତ ଲୁଗା ଆଦୌ ପିନ୍ଧନ୍ତି ନାହିଁ । ପୁରୁଷମାନେ ଲେଙ୍ଗୁଟି ପିନ୍ଧନ୍ତି । ସ୍ତ୍ରୀମାନେ ଅଣ୍ଟାରେ କେବଳ ଗୁଡ଼ିଏ କନା ଘେରାଇଥାନ୍ତି । ଗହଣା ସବୁ ପିତଳ, ଲୁହାରେ ତିଆରି କରି ପିନ୍ଧନ୍ତି । ବେକରେ ନାନା ରକମର ମାଳି ବେକ ଭର୍ତ୍ତି କରି ପିନ୍ଧିଛନ୍ତି । ସଫେଇ ତ ଆଦୌ ନାହିଁ । ଝାଡ଼ା ଫେରିଲେ ପରିଷ୍କାର ହୁଅନ୍ତି ନାହିଁ । ଗାଧୁଆ କଥା ତ ଛାଡ଼ । ସେ କନା ଖଣ୍ଡିକ କେବେ ହେଲେ ଧୁଅନ୍ତି ନାହିଁ । ମୁଣ୍ଡରେ ଅଳ୍ପ ଅଳ୍ପ ବାଳ ରଖିଛନ୍ତି । ସେଥିରେ ତେଲ ଆଦୌ ଲଗାନ୍ତି ନାହିଁ । ଦେହ ଯେପରି ପୋଡ଼ା

କାଠ, ଏପରି ଦିଶୁଛନ୍ତି । ଖାଦ୍ୟ କେବଳ ପାଣି ପରି ମାଣ୍ଡିଆ ଯାଉ ହାଣ୍ଡିଏ ରାନ୍ଧି ସେଥିରୁ ଟିକିଏ ଟିକିଏ ଦିନ ସାରା ପିଅନ୍ତି । ତା ସାଙ୍ଗରେ ସାଟ୍ରୁପତ୍ର ସିଝାଇ ଏବଂ ଲୁଣ ଲଙ୍କା ବାଟି ଅଳ୍ପ ଅଳ୍ପ ଖାଆନ୍ତି । ଯୁ ଛଡ଼ା ଯାହା ଫଳବାପତ୍ର ପାଆନ୍ତି ତାକୁ କଞ୍ଚାରେ ଖାଆନ୍ତି । ସକାଳୁ ମାଣ୍ଡିଆଯାଉ ରାନ୍ଧି ହାଣ୍ଡିରେ ପୂରାଇ ମୁଣ୍ଡରେ ମୁଣ୍ଡାନ୍ତି—ତା’ ପରେ ଛୁଆମାନଙ୍କୁ ପିଠିରେ ବାନ୍ଧି ପାହାଡ଼କୁ ଯାଆନ୍ତି । ଦିନଯାକ କାମ କରନ୍ତି ଏବଂ ସେଥିରୁ ଟିକିଏ ଟିକିଏ ପିଅନ୍ତି । ସନ୍ଧ୍ୟା ହେଲେ ଘରକୁ ଫେରନ୍ତି । ଏମାନଙ୍କର ଗୋଟିଏ ପରିବାରରେ ଯେତେ ଲୋକ ଥାଆନ୍ତୁ ନା କାହିଁକି ସମସ୍ତେ ଗୋଟିଏ ଘରେ ଶୁଅନ୍ତି । ସମସ୍ତଙ୍କର ଗୋଟିଏ ବଖରା ଘରରୁ ଦୁଇ ବଖରା ନାହିଁ । ସମସ୍ତଙ୍କର ଦୁଇଟା ସ୍ତ୍ରୀରୁ କମ୍ ନାହାନ୍ତି । ସବୁ ପୁରୁଷମାନେ ଦୁଇଟାରୁ ଅଧିକ ସ୍ତ୍ରୀ ବିବାହ କରିଛନ୍ତି । ସେଇ ଗୋଟାଏ ଘରେ ସବୁ ପରିବାର ଚଳନ୍ତି । ଅର୍ଥାତ୍ ବାପା, ମା, ପୁଅ, ବୋହୂ, ଝିଅ, ଜୋଇଁ ଏପରି କୋଡ଼ିଏ ଜଣ ଲୋକ ବି ସେଇ ଗୋଟିଏ ଘରେ ଚଳନ୍ତି । ଏମାନେ ମଦ, ପିକା, ଘୁଷୁରି ମାଂସ ପ୍ରଭୃତି ପୋଡ଼ି କରି ଖାଆନ୍ତି । ଛୋଟ ଛୋଟ ପକ୍ଷୀମାନଙ୍କୁ ଧନୁଶରଦ୍ୱାରା ମାରି ନିଆଁରେ ପୋଡ଼ି ଖାଆନ୍ତି । ଏମାନଙ୍କୁ କୌଣସି ରୋଗ ହେଲେ ତାଙ୍କର ଦେବତା ପୂଜା କରନ୍ତି । କୁକୁଡ଼ା, ଛେଳି ପ୍ରଭୃତି ଦେବତା ପାଖରେ ହାଣନ୍ତି । ସେଥିରେ ତାଙ୍କର ରୋଗ ଭଲ ହୋଇଯାଏ । ଏ ସ୍ତ୍ରୀମାନଙ୍କର ଛୁଆ ହେଲେ କୌଣସି କଷ୍ଟ ହେଉନାହିଁ । ଛୁଆ ହେବା ପରେ ଯାଉ ପିଇଦେଇ ସେ ଛୁଆକୁ ପିଠିରେ ବାନ୍ଧି ସଙ୍ଗେ ସଙ୍ଗେ କାମ କରିବାକୁ ପାହାଡ଼କୁ ଚାଲି ଯାଆନ୍ତି । ଏମାନଙ୍କ ଭିତରୁ କେହି ମଲେ କିମ୍ବା ବିବାହ ହେଲେ ମାଂସ ପୋଡ଼ିକରି ଖାନ୍ତି ଏବଂ ତା ସଙ୍ଗେ ମଦ ପିଅନ୍ତି । ଏପରିକି ମଦ ପିଇ ପିଠାପିଠି ହୋଇ ଜଣେ

ଅଧେ ମରିବା ପର୍ଯ୍ୟନ୍ତ ପାନ୍ତି । ଏପରି ଲୋକମାନଙ୍କ ଭିତରେ ରହିବାକୁ ହେଲେ କେତେ ଯେ କଷ୍ଟ ସହ୍ୟ କରିବାକୁ ହେବ ତାହା ଆପଣ ଅନୁମାନ କରିବେ । ତା ଛଡ଼ା ଏଠାରେ ଏତେ କୁହୁଡ଼ି ବର୍ଷା ହେଉଛି ଯେ, ଦିନରାତି ବାରି ହେଉ ନାହିଁ । ସବୁବେଳେ ଆକାଶ ଅନ୍ଧକାର ଦେଖାଯାଉଛି । ଆଜିଠାରୁ ଏତେ ଶୀତ ଯେ କମ୍ବଳ ଘୋଡ଼େଇ ହୋଇ ଶୋଇଲେ ମୁଦ୍ଧା ଶୋଇ ହେଉନାହିଁ ।

ସବୁବେଳେ ଆମକୁ ଥଣ୍ଡା ହେଉଛି । ଝାଡ଼ାଗଲେ, ଗାଧୋଇ ଗଲେ ଖାଲି ପଥର ଉପର ଦେଇ ଚାଲିବାକୁ ହେଉଛି । ପଥର ବାଜି ବାଜି ଅଙ୍ଗୁଳି ଟିପ ନଖ ଇତ୍ୟାଦି ଛିଣ୍ଡିଗଲାଣି । ଏପରି ଅବସ୍ଥାରେ ଆମମାନଙ୍କର ସ୍ୱାସ୍ଥ୍ୟ ଭଲ ରହିବ ଏବଂ ଆମେ ଏ ଭିତରେ ରହି କାମ କରିବୁ, ଏହା କାହିଁକି ଆମର ଆଦୌ ବିଶ୍ୱାସ ହେଉନାହିଁ । ଏ ଭିତରେ ମୋତେ ମ୍ୟାଲେରିଆ ହୋଇସାରିଲାଣି ।

ଏମାନେ ଗାଈ ମଇଁଷି ରଖି ହଳ କରନ୍ତି । ଦୁଧ ଦୁହିଁ ଖାଇବା ଜାଣନ୍ତି ନାହିଁ । ଏମାନଙ୍କୁ ପାନ୍ତ, ପାଇକ ଏବଂ ଅଫିସରମାନେ ଖୁବ୍ ବେଠି ଖଟାଇ ସମସ୍ତ କାର୍ଯ୍ୟ ହାସଲ କରୁଥିଲେ । ବର୍ତ୍ତମାନ ୪।୫ ମାସ ହେଲା ବେଠି ପ୍ରଭୃତି ବନ୍ଦ କରାଇବାରୁ ଉକ୍ତ ବ୍ୟକ୍ତିମାନେ ଆମ ଉପରେ ଖୁବ୍ ବିରକ୍ତ ଅଛନ୍ତି ।

ଆପଣଙ୍କର

ସ୍ନେହର ସୁଶୀଳା

ଏଇ ମାଲରେ କାମ କରୁଥିବା ବେଳେ ଥରେ ସେ ଗାଁକୁ ଆସିଥିଲା । ମାଲ୍କାଦରେ ଯେଉଁ ପଞ୍ଚୁଦୋଳ ମେଳଣ ହୁଏ, ସେଇଟା ପାରିକୁଦ ମାଲ୍କାଦର ସବୁଠାରୁ ବଡ଼ ମେଳା । ସେଇଠି, ପୂର୍ବେ ଯେଉଁ

ମାନ୍ୟଲୋକଙ୍କୁ ଦେଖି ସେ ଲୁଚିବାର କଥା ସେଇମାନଙ୍କ ସମକ୍ଷରେ, କୌଣସି ସଂକୋଚର ଚିହ୍ନ ନ ରଖି, ସୁଶୀଳା ଯେପରି ଭାବରେ ଜନସେବା କରିଥିଲା, ତାର ସର୍ବବ୍ୟାପୀ ପ୍ରଶଂସା ସୁଦୂର ସମ୍ବଲପୁରରେ ମଧ୍ୟ ଆମ ନିକଟରେ ଆସି ପହଞ୍ଚିଥିଲା । ସୁଶୀଳାପରି ବିଧବା ଓ ସ୍ୱାମୀ ପରିତ୍ୟକ୍ତା ସହସ୍ର ସହସ୍ର ଭଉଣୀ ଏ ଦେଶରେ ଜୀବନକୁ ଅସହାୟ ଅଶ୍ରୁରେ ଭସାଉଥିବେ । ସୁଶୀଳାର ଜୀବନ ସେମାନଙ୍କୁ ଅନ୍ଧକାରରେ ବର୍ତ୍ତିକା ହେଉ । ସେମାନେ କୁସଂସ୍କାରର ବନ୍ଧନୀ ଭିତରୁ ବାହାରି ଆସନ୍ତୁ । ଜନସେବା ଓ ସହସ୍ର ସତ୍କର୍ମରେ ସେମାନଙ୍କର ଜୀବନ ପରମ ଚରିତାର୍ଥତା ଲାଭକରୁ ।

ସୁଶୀଳା ଧନୀ ଓ ଜଣାଶୁଣା ଘରର କନ୍ୟା । ବାପ ଓ ଶାଶୁଘର ସମସ୍ତେ ତାକୁ ଭଲ ପାଉଥିଲେ । ତା ଜୀବନ ଏପରି ଦୁଃଖମୟ ହେବ ବୋଲି କେହି କଳ୍ପନା କରି ନ ଥିଲେ । ତାର ଶାଶୁ, (ମୋର ଖୁଡ଼ୀ ଶାଶୁ) ସୁଶୀଳା ପରିତ୍ୟକ୍ତା ହେବାରେ ତାକୁ ଝୁରି ଝୁରି ଏବଂ ଶୁଣୁଚେ ପୁଅକୁ ଅଭିଶାପ ଦେଇ ଦେଇ, ପ୍ରାଣତ୍ୟାଗ କଲେ । ବୋହୂ ପାଇଁ କୌଣସି ଶାଶୁ ଯେ, ଏପରି କାନ୍ଦନ୍ତି ତାହା ମୋର ପ୍ରଥମ ଅନୁଭୂତ । ମୋ ଆଗରେ ମଧ୍ୟ ସୁଶୀଳା କଥା ପକାଇ ଝରଝର କରି ଲୁହ ଗଡ଼ାଇବାର ଦେଖି ମୁଁ ବିସ୍ମିତ ହୋଇଛି ।

ଆଶ୍ରମରେ ଥିଲାବେଳେ ସୁଶୀଳା ରନ୍ତଲେଇ ମହାମାସିରୁ ପ୍ରାପ୍ତ ଏକ ହରିଣ ଶିଶୁକୁ ଅତି ଆପଣାର କରି ପାଳନ କରିଥିଲା । ଆଶ୍ରମ ଛାଡ଼ିବାବେଳେ ତାକୁ ଛାଡ଼ିପିବାକୁ ପଡ଼ିବ ଭାବି ସେ ଯେଉଁ କରୁଣ ପତ୍ର ଲେଖିଥିଲା, ମନେହେବ ସତେ ଯେପରି ସେ ତାର ନିଜ ସନ୍ତାନକୁ ଛାଡ଼ିପିବା କଳ୍ପନାରେ ଶଙ୍କାତୁର ହୋଇ ଉଠିଛି ।

ସେ ନିଜ କାର୍ଯ୍ୟର ଉଲ୍ଲେଖ କୌଣସି ପତ୍ରରେ ବିଶେଷ କରିନାହିଁ । ତାର ଦେଖାଇ ହେବା ପ୍ରବୃତ୍ତି ନ ଥିବାରୁ, ମାଲତୀ ଦେବୀଙ୍କ ଭାଷାରେ ସମଗ୍ର ନାରୀ ଜାତିର ମୁହଁକୁ ଉଜ୍ଜ୍ୱଳ କରି "ମିଅଁ ଅବ୍ଦୁବେକ୍ ଅଦାମ"ଙ୍କର ନାଁ ପରି ସ୍ୱାଧୀନ ଭାରତ ସମାଜର ନବନିର୍ମାଣ ରଚନାର ଇତିହାସ ଲେଖା ହେଲାବେଳେ ଶ୍ରୀମତୀ ସୁଶୀଳାର ନାଁ ସ୍ୱର୍ଣ୍ଣାକ୍ଷରରେ ପ୍ରଥମ ଧାଡ଼ିରେ ଯେ ଲିଖିତ ହେବ ସନ୍ଦେହ ନାହିଁ ।

---

# ଘୁମ୍ ଭାହ୍ୱାଣୀ

ଡକ୍ଟର ବସନ୍ତକୁମାର ବେହୁରା

କେବେ ସେ ଜନ୍ମ ହୋଇଥିଲା, ତା'ର କି ଜୀବନ ଇତିହାସ, ଏପରି କି ତାର ନାମ କ'ଣ ସେ ଖବର କେହି ରଖି ନାହିଁ । ଦରିଦ୍ର ଭାରତରେ ତା'ପରି ଧୂଳି ମାଟିର ଜୀବ କେତେ ଜନ୍ମ ହୁଅନ୍ତି, କେତେ ମରନ୍ତି । ଦାର୍ଜିଲିଂକୁ କେତେ ଯାତ୍ରୀ ଯାନ୍ତି, ଆସନ୍ତି । ଦାର୍ଜିଲିଂ ଯିବା ରେଳ ପଥରେ ଘୁମ୍ ଷ୍ଟେସନ ପଡ଼େ । ଏ ବାଟରେ ସମୁଦ୍ର ସମତଳଠାରୁ ସବୁଠାରୁ ଉଚ୍ଚରେ ଅବସ୍ଥିତ ଷ୍ଟେସନ ବୋଲି ଏହାର ବିଶେଷତ୍ୱ । ସେଇ ଷ୍ଟେସନରେ ଭୁଟିଆ ଜାତିର ବୁଢ଼ୀଟିଏ ଭିକ ମାଗେ । ଗାଡ଼ି ପହଞ୍ଚିଲା ବେଳକୁ ସେ ଉପସ୍ଥିତ ଥିବଇ ଥିବ । ଶଏବର୍ଷରୁ ବେଶୀ ବୟସ ତାକୁ । ଚମ ଧୂଙ୍କୁ ଧୂଙ୍କୁ, ଛିଣ୍ଡା ମଇଳା ଲୁଗା ତା'ର ପରିଧେୟ; କିନ୍ତୁ ଦେହ ତା'ର ସୁସ୍ଥ, ସବଳ । ମୁହଁରେ ତା'ର ଉଦ୍‌ବେଗର ଲେଶ ସଙ୍କେତ ନ ଥାଏ । ସବୁବେଳେ ଶାନ୍ତ ମୁହଁଟିରେ ଆନନ୍ଦ ଯେପରି ଫୁଟି ଉଠୁଥାଏ । କେଜାଣି କେତେ ଦିନରୁ ସେ ଭିକ ମାଗୁଛି । ଅନ୍ତତଃ ପଚାଶବର୍ଷ ହେଲା ଲୋକେ ତାକୁ ଦେଖୁଛନ୍ତି । ଏ ପଚାଶବର୍ଷ ଭିତରେ କେତେ ପରିବର୍ତ୍ତନ ହୋଇଛି; କିନ୍ତୁ ବୁଢ଼ୀଟିର କୌଣସି ବିଶେଷ ପରିବର୍ତ୍ତନ କେହି ଲକ୍ଷ୍ୟ କରିନି । କେତେ ସାହେବ ଯାତ୍ରୀ ଦାର୍ଜିଲିଂ ଯାନ୍ତି, ଆଉ ଫେରନ୍ତି, ଆଉ ଦେଖନ୍ତି ଏଇ ଭିକାରିଣୀଟିକୁ । ଇଂରେଜ

ପରିବ୍ରାଜକ ଲେଖକମାନେ ତା’ ନା ଦେଇଥିଲେ **Ghoom witch** ଅର୍ଥାତ୍ ଘୁମ୍ ଡାହାଣୀ । ଫଟୋ ତା’ର କେତେ ଇଂରେଜ ପୁସ୍ତକ ଓ କାଗଜରେ ବାହାରେ, କଲିକତା ଓ ଦାର୍ଜିଲିଂର ଫଟୋ ଦୋକାନରେ ବିକ୍ରୀ ହୁଏ । ଏଇପରି ସେ ଇଂରେଜ ପରିଭ୍ରମଣ-କାରୀଙ୍କ କୌତୂହଳରୁ ଅମର ହୋଇଛି; କିନ୍ତୁ ଏଇ ଅମରତ୍ୱ ବ୍ୟତୀତ ତା’ପାଇଁ ଆଉ ଏକ ଅମରତ୍ୱ ଥିଲା ।

ଘୁମ୍ ଡାହାଣୀର ମୃତ୍ୟୁ ହେଲା ଡିସେମ୍ବର ପହିଲା ୧୯୦୩ ମସୀହାରେ । ମଲାପରେ ଦେଖାଗଲା, ଅନ୍ୟ ଜିନିଷପତ୍ର ବ୍ୟତୀତ ତା’ଠି ନଗଦ ସତର ଶହ ଟଙ୍କା ଜମା ଅଛି । [ଆଉ ଏହି ଅସଭ୍ୟ, ନିରକ୍ଷର, ଭିକାରୁଣୀ ଘୁମ୍‌ଡାହାଣୀ ଏକ ଦାନପତ୍ରଦ୍ୱାରା ତା’ର ସମସ୍ତ ଜୀବନର ସଞ୍ଚିତ ଅର୍ଥ ଏକ ପାନ୍ଥଶାଳା ନିର୍ମାଣ ପାଇଁ ଦାନ କରି ଯାଇଛି । ଧୂଳିର ଜୀବ ଭିକାରୁଣୀ ଘୁମ୍‌ଡାହାଣୀ ଅଜ୍ଞ ନିଜର ଉଚ୍ଚ ମନଦ୍ୱାରା ଅମରତ୍ୱ ଲାଭ କରିଛି । ଭିକାରୁଣୀଟିଏ ଯେଉଁ ଆଦର୍ଶ ଦେଖାଇ ଯାଇଅଛି, ତାହା ବହୁ ଧନୀ ପୁରୁଷ ଓ ମହିଳା-ମାନଙ୍କ ଠାରେ ବିରଳ ।

---

# ସତୀ ସୁକନ୍ୟା

ପଦ୍ମଶ୍ରୀ ଲକ୍ଷ୍ମୀନାରାୟଣ ସାହୁ

ଆଜକାଲି ତ ନର ସତ୍‌ ହେବାର ମର୍ଯ୍ୟାଦା ବୁଝୁ ନାହିଁ, ଯେଉ ସତୀ ବା କିଏ ହେଉଛି ? ଆଉ ଯିଏ ବା ସତୀ ହେବାର ପ୍ରୟାସ କରୁଛି, ତାକୁ ବଡ଼ ଭାରି ପ୍ରଶଂସା କେହି କରୁଛି ତାହା ନୁହେଁ । ତଥାପି ଆଦର୍ଶର ଭାବ ବୁଝିବା ଲୋକ ପକ୍ଷରେ ସତୀର ମର୍ଯ୍ୟାଦା ଅଛି ।

ସତୀ ସୁକନ୍ୟା ପ୍ରାଚୀନ କାଳରେ ଅଯୋଧ୍ୟାର ସୂର୍ଯ୍ୟବଂଶରେ ଜନ୍ମଗ୍ରହଣ କରିଥିଲେ । ମହାରାଜା ଶର୍ଯାତଙ୍କ କନ୍ୟାର ନାମ ସୁକନ୍ୟା ।

ଦିନେ ମୃଗୟା କରୁ କରୁ ମହାରାଜ ଶର୍ଯାତ ଚ୍ୟବନ ଋଷିଙ୍କ ଆଶ୍ରମରେ ପହଞ୍ଚିଲେ । ସଙ୍ଗରେ କନ୍ୟା ମଧ୍ୟ । ଆଶ୍ରମରେ ସଙ୍ଗୀମାନେ ଗୋଟିଏ ଜାଗାରେ ବଣ ଭିତରକୁ ଗଲେ । ସେଠି ଗୋଟିଏ ଜାଗାରେ ଦୁଇଟା ଜ୍ୱଳନ୍ତ ଅଙ୍ଗାର ଭଳି କ'ଣ ଦେଖାଗଲା । ସୁକନ୍ୟା ସେ ଦୁଇଟି କ'ଣ ଜାଣିବା ପାଇଁ କୌତୁହଳୀ ହୋଇ, ସେହି ଦୁଇଟା ଜ୍ୱଳନ୍ତ ଅଙ୍ଗାର ଭଳି ଯାହା ଦିଶୁଥିଲା ସେଥିରେ କାଠି ଖୋଞ୍ଚିଦେଲା । ଏତିକିରେ ମହାପ୍ରଳୟ ଉପସ୍ଥିତ ହୋଇଗଲା । ଅଗ୍ନି ବୃଷ୍ଟି, ଜଳବର୍ଷା, ଝଡ଼ ତୋଫାନ, କେତେ ଘରଦୁଆର ଭଙ୍ଗା

କେତେ ଲୋକ ଗଲେ, କେତେ ଜୀବଜନ୍ତୁର ପ୍ରାଣନାଶ ସବୁ ଘଟିଗଲା । କାରଣ କଣ ବୁଝିବାରୁ ଦେଖାଗଲା ଯେ, କନ୍ୟା ସୁକନ୍ୟା ଚ୍ୟବନ ଋଷିଙ୍କର ଆଖି ଫୁଟାଇ ଦେଇଛନ୍ତି । ଏହାହିଁ କାରଣ । ପରେ କିପରି ପ୍ରକୃତି ଶାନ୍ତ ହେବ ବୁଝିବାରୁ ଜଣାଗଲା ଯେ ସୁକନ୍ୟାକୁ ଚ୍ୟବନ ଋଷିଙ୍କ ସହିତରେ ବିବାହ ଦେଲେ ଏହି ବିପର୍ଯ୍ୟୟ ଶାନ୍ତ ହେବ ।

ପ୍ରଥମେ ରାଜା ଅମଙ୍ଗ ହେଲେ, ସୈନ୍ୟ ସାମନ୍ତ ସମସ୍ତେ ଅମଙ୍ଗ ହେଲେ । କିନ୍ତୁ ସୁକନ୍ୟା ନିଜ ପାପର ପ୍ରାୟଶ୍ଚିତ୍ତ କରିବା ପାଇଁ ବୃଦ୍ଧ, ଅନ୍ଧ ଚ୍ୟବନ ଋଷିଙ୍କୁ ବିବାହ କଲେ ।

ଦିନେ ଅଶ୍ୱିନୀକୁମାର ଆସି ନଦୀ ଘାଟରେ ସୁକନ୍ୟାକୁ ଭୁଲାଇବାକୁ ଚେଷ୍ଟା କଲେ । ସେଥିରେ ସୁକନ୍ୟା କ୍ରୁଦ୍ଧ ହେଲେ । ଅଶ୍ୱିନୀକୁମାର କହିଲେ ଆମେ ପରୀକ୍ଷା କରୁଥିଲୁଁ ମାତ୍ର । ଆମେ ତୁମ ସ୍ୱାମୀର ଚକ୍ଷୁ ଫେରାଇ ଆଣିବୁ ଏବଂ ତାଙ୍କୁ ସୁପୁରୁଷକରି ଦେବୁଁ କିନ୍ତୁ କିପରି ସୁପୁରୁଷ ଏବଂ କେଉଁ ସୁପୁରୁଷକୁ ଗ୍ରହଣ ତୁମେ ବାଛିବ । ଏହା କହି ଚ୍ୟବନଋଷିଙ୍କୁ ଆଣିଲେ ଏବଂ ତାଙ୍କୁ ପାଣିରେ ବୁଡ଼ିବାକୁ କହିଲେ । ଅଶ୍ୱିନୀକୁମାର ଓ ସେ ଦୁହେଁ ମଧ୍ୟ ପାଣିରେ ବୁଡ଼ିଲେ । ବୁଡ଼ି ଉଠିଲା ବେଳକୁ ତିନି ଜଣଯାକ ସୁପୁରୁଷ ଏବଂ ଏକପ୍ରକାର ଦେଖା ଯାଉଛନ୍ତି । ସେଥିରୁ ବାଛିବେ କିପରି ? କିନ୍ତୁ ସୁକନ୍ୟା ଈଶ୍ୱରଙ୍କୁ ଧ୍ୟାନ କରି ଅପଣା ସ୍ୱାମୀକୁ ଚିହ୍ନିଲେ ଏବଂ ତାଙ୍କୁ ନେଇ ଆଶ୍ରମକୁ ଫେରିଲେ ।

ଇତି ମଧ୍ୟରେ ରାଜା ଦିନେ ଆଶ୍ରମକୁ ଆସି ଦେଖିଲେ ଯେ ଆଶ୍ରମରେ କିଏ ଜଣେ ଯୁବକ ରହିଛି । ମନରେ ସନ୍ଦେହ ହେଲା—ସୁକନ୍ୟା ଚରିତ୍ର ଭ୍ରଷ୍ଟା ହୋଇଛି ବୋଲି । କିନ୍ତୁ ପରେ

ସବୁ କଥା ଜାଣି ପାରି ସନ୍ତୁଷ୍ଟ ହେଲେ । ରାଜା, ଚ୍ୟବନଋଷି ଆଉ ସୁକନ୍ୟାଙ୍କୁ ନେଇ ଅଯୋଧ୍ୟାକୁ ଆସିଲେ । ସେଠାରେ ଆନନ୍ଦ ଉତ୍ସବ ହେଲା ।

ତା ପରେ ଯଜ୍ଞ ଆରମ୍ଭ ହେଲା । ସବୁ ଦେବତାଙ୍କୁ ନିମନ୍ତ୍ରଣ କରାଗଲା । ଖୁବ୍ ଆଡ଼ମ୍ବରରେ ଯଜ୍ଞ ହେଲା । ଯଜ୍ଞର ଶେଷକୁ ସୋମପାନ ବ୍ୟବସ୍ଥା ହେଲା । ଅଶ୍ୱିନୀକୁମାରଙ୍କୁ ସୋମପାନ ପାଇଁ ଚ୍ୟବନଋଷି ବଢ଼ାଇ ଦେଲେ । ଇନ୍ଦ୍ର ଏଥିରେ ରାଗିଯାଇ ବଜ୍ର ମାରିଲେ । କିନ୍ତୁ ସୁକନ୍ୟା ଆପଣା ସତୀତ୍ୱ ବଳରେ ବଜ୍ରରୁ ସମସ୍ତଙ୍କୁ ରକ୍ଷା କଲେ । ଦେବତାମାନେ ରାଜା ଶର୍ଯାତିଙ୍କୁ ପୁତ୍ର ଦାନ କରି ଚାଲିଗଲେ ।

କିଛି ଦିନ ପରେ ଚ୍ୟବନ ଆଉ ସୁକନ୍ୟା ଆଶ୍ରମକୁ ଫେରିଲେ ।

---

# ମାଡ଼ାମ୍ ମେରି କ୍ୟୁରି

ଶ୍ରୀମତୀ କବିତା ମହାପାତ୍ର

ମହୀୟସୀ ନାରୀମାନଙ୍କ ମଧ୍ୟରେ ମାଡ଼ାମ୍ ମେରି କ୍ୟୁରି ଅନ୍ୟତମ । ସେ ରେଡ଼ିୟମ ପରି ବିଖ୍ୟାତ ଓ ମୂଲ୍ୟବାନ୍ ଧାତୁକୁ ଆବିଷ୍କାର କରିଥିଲେ, ଏହା ଶୁଣିଲେ ଆଶ୍ଚର୍ଯ୍ୟ ଲାଗେ । ୧୮୬୮ ଖ୍ରୀଷ୍ଟାବ୍ଦରେ ପୋଲାଣ୍ଡର ଓ୍ୟାରସରେ ତାଙ୍କର ଜନ୍ମ । ତାଙ୍କର ପିତା ଗରିବ ବୈଜ୍ଞାନିକ ଥିଲେ ।

ମେରି ପ୍ରଥମେ ନିଜର ଭରଣ ପୋଷଣ ପାଇଁ ଜଣେ ଭଦ୍ରଲୋକଙ୍କ ଘରେ ପରିଚାରିକା ରୂପେ ନିଯୁକ୍ତ ହେଲେ । ଅବସର ସମୟରେ ସେ ରସାୟନବିଦ୍ୟା ପାଠ କରୁଥିଲେ । ଦୀର୍ଘ କେତୋଟି ବର୍ଷ ମଧ୍ୟରେ ସେ କିଛି ଅର୍ଥ ସଞ୍ଚୟ କରିପାରିଥିଲେ । ଏହି ଅର୍ଥ ସାହାଯ୍ୟରେ ସେ ପ୍ୟାରିସ୍‌ରେ ଥିବା ସୋବର୍ଣ୍ଣ ବିଶ୍ୱବିଦ୍ୟାଳୟକୁ ପଢ଼ିବାକୁ ଗଲେ ।

ଏହି ବିଶ୍ୱବିଦ୍ୟାଳୟରେ ତାଙ୍କର ପେରି କ୍ୟୁରିଙ୍କ ସହିତ ସାକ୍ଷାତ ହେଲା । ସେ ସେହି ବିଶ୍ୱବିଦ୍ୟାଳୟର ଜଣେ ବିଜ୍ଞାନ ଅଧ୍ୟାପକ ଥିଲେ । ପେରି ଜଣେ ଦୃଢ଼ପ୍ରତିଜ୍ଞ ଓ ବିଜ୍ଞାନପ୍ରିୟ ଲୋକ ଥିଲେ । ମେରିଙ୍କର ତାଙ୍କ ସହିତ ବିବାହ ହେଲା । ମେରିଙ୍କୁ ତାଙ୍କର ଜଣେ ସଙ୍ଗୀ ଗୋଟିଏ ମୂଲ୍ୟବାନ୍ ବିବାହପୋଷାକ ଦେବାକୁ ମନସ୍ଥକରି ଖଣ୍ଡିଏ ଚିଠି ଲେଖିଲା । ସେ ତାହାର ଉତ୍ତରରେ

ଲେଖିଲେ, 'ମୋର ଗୋଟିଏ ପୋଷାକ ଛଡ଼ା ଅଉ କିଛି ନାହିଁ । ମୁଁ ଏହାକୁ ଘରେ ଏବଂ ଗବେଷଣାଗାରକୁ ପିନ୍ଧି ଯାଏ । ତୁମେ ଯଦି କିହାତ ଦେବାକୁ ଇଚ୍ଛା କର, ତେବେ ମତେ ଏପରି ଗୋଟିଏ ପୋଷାକ ଦିଅ, ଯାହାକି ମୁଁ ବିବାହ ପରେ ମଧ୍ୟ ପିନ୍ଧି ମୋର ଘରର ଏବଂ ବାହାରର ପ୍ରତ୍ୟେକ କାମ କରିପାରିବି ।' ତାଙ୍କ ସ୍ୱଭାବ ସେହିପରି ସରଳ ଥିଲା । ତାଙ୍କର ଦୁଇଟି ସନ୍ତାନ ହୋଇଥିଲା । ବିଜ୍ଞାନ ଚର୍ଚ୍ଚାସତ୍ତ୍ୱେ ପାରିବାରିକ ଜୀବନର କୌଣସି କାର୍ଯ୍ୟରେ ସେ ତ୍ରୁଟିକରି ନାହାନ୍ତି ।

ରେଡ଼ିୟମ୍ ଅବିଷ୍କାର କାର୍ଯ୍ୟରେ ସେ ଏକଦମ୍ ପାଗଳ ହୋଇ ଯାଇଥିଲେ କହିଲେ ଚଳେ । ଏହି କାର୍ଯ୍ୟରେ ସେ ନିଜ ସ୍ୱାମୀଙ୍କ ଛଡ଼ା ଅନ୍ୟ କାହାଠାରୁ କୌଣସି ସାହାଯ୍ୟ ପାଇ ନ ଥିଲେ ବା ପାଇବାକୁ ଆଶା କରୁ ନ ଥିଲେ ।

ରେଡ଼ିୟମ୍, ପିଚବ୍ଲେଣ୍ଡ ନାମକ ଧାତୁ ସହିତ ମିଶି ରହିଥାଏ । ଏହାର ମୂଲ୍ୟ ଅତ୍ୟଧିକ ଥିବାରୁ ଅର୍ଥହୀନା ମେରି ଏହାକୁ କିଣିପାରିଲେ ନାହିଁ । ତେବେବି ମେରି ରେଡ଼ିୟମକୁ ଭୁଲି ପାରିଲେ ନାହିଁ ।

ଅନେକ ଭାବିବା ପରେ ତାଙ୍କୁ ଗୋଟିଏ ବୁଦ୍ଧି ଦିଶିଲା । ସେତେବେଳେ ବୈଜ୍ଞାନିକମାନେ ବୋହେମିଆରେ ଥିବା ଖଣିରୁ ପିଚବ୍ଲେଣ୍ଡ ଅଣୁଥିଲେ । ଏହା କାଚ ଉତ୍ପାଦନରେ ସାହାଯ୍ୟ କରୁଥିଲା । ଏହାର ବ୍ୟବହାର ସରିଲେ ଏହାକୁ ଅଳିଆ ଗଦାରେ ପକେଇ ଦିଆଯାଉଥିଲା । ମେରି ଭାବିଲେ ରେଡ଼ିୟମ ସେହି ଅଳିଆ ଗଦାରେ ପଡ଼ିଥିବା ଅଦରକାରୀ ପିଚବ୍ଲେଣ୍ଡରୁହିଁ ବାହାରିବ । ଗୋଟିଏ ଅଳିଆଗଦା କିଣିବାକୁ ବେଶି ପଇସା ପଡ଼ିବ ନାହିଁ ଭାବି ସେ ଅଧିକ ଖୁସି ହେଲେ ।

ଭାଗ୍ୟଲକ୍ଷ୍ମୀ ମେରିଙ୍କୁ ସାହାଯ୍ୟ କଲେ । ଖଣିରେ କାମ କରୁଥିବା ଲୋକେ ମେରିଙ୍କୁ ବିନା ମୂଲ୍ୟରେ ସେହି ଅଳିଆଡକ ଦେଇ ଦେବାକୁ ସମ୍ମତ ହେଲେ । ମେରିଙ୍କୁ ଖାଲି ବୋହେମିଆରୁ ପାରିସକୁ ଆଣିବା ବାବଦ ଖର୍ଚ୍ଚ ଯାହା ପଡ଼ିଲା । କିନ୍ତୁ ଏତେ ଅଳିଆ ନେଇ କେଉଁଠି ରଖିବେ, ସେ ତାହା ଭାବି ସ୍ଥିର କରି ପାରିଲେ ନାହିଁ । ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷ ମଧ୍ୟ କୌଣସି ସାହାଯ୍ୟ ଦେଇ ପାରିଲେ ନାହିଁ । ଅନେକ ଚେଷ୍ଟା କରି ବିଶ୍ୱବିଦ୍ୟାଳୟକୁ ଲାଗିଥିବା ଗୋଟିଏ ଛୋଟ ଭଙ୍ଗା ଘରେ ସେତକ ରଖିବାକୁ ଅନୁମତି ପାଇଲେ । ସେ ଏହି ଭଙ୍ଗା ଘରଟିକୁ ବହୁ କଷ୍ଟରେ ଗୋଟିଏ ଗବେଷଣାଗାର ବନେଇଲେ ।

କିନ୍ତୁ ଘରଟି ନିହାତି ଭଙ୍ଗା ଥିବାରୁ ଖରାଦିନରେ ଅତିରିକ୍ତ ଖରା ଓ ବର୍ଷାଦିନେ ବର୍ଷା ଗାଇବାକୁ ପଡ଼ୁଥିଲା । ଘର ମଧ୍ୟ ଛୋଟ ଥିବାରୁ ମେରି ଓ ତାଙ୍କ ସ୍ୱାମୀଙ୍କୁ ଅଗଣାରେ କାମ କରିବାକୁ ପଡ଼ୁଥିଲା । କିନ୍ତୁ ବର୍ଷା ହେଲେ ଜିନିଷପତ୍ର ଧରି ପୁଣି ଘର ଭିତରକୁ ଆସିବାକୁ ହେଉଥିଲା । ଏତେ କଷ୍ଟ ପାଇ ସୁଦ୍ଧା ମେରି ଓ ତାଙ୍କ ସ୍ୱାମୀ ରେଡ଼ିୟମକୁ ଭୁଲି ପାରିଲେ ନାହିଁ । ଏହିପରି ଦେଖୁ ଦେଖୁ ୪ଟି ବର୍ଷ କଟିଗଲା । ଅଥଚ ରେଡ଼ିୟମ ଆବିଷ୍କୃତ ହୋଇ ପାରିଲା ନାହିଁ । ପେରି କ୍ୟୁରି ହତାଶ ହୋଇ ପଡ଼ିଲେ । କିନ୍ତୁ ମେରି ଧୈର୍ଯ୍ୟ ନ ହରେଇ ପୂର୍ବପରି କାର୍ଯ୍ୟ କରିବାକୁ ଲାଗିଲେ ।

ସଞ୍ଜବେଳକୁ ଘରକୁ ଫେରି ମେରି ନିଜର ଛୋଟ ପିଲା-ମାନଙ୍କର ତତ୍ତ୍ୱ ନେଉଥିଲେ ଏବଂ ନିଜ ହାତରେ ରାନ୍ଧି ସମସ୍ତଙ୍କୁ ଖାଇବାକୁ ଦେଉଥିଲେ । ଏହିପରି ଆଉରି ୪ଟି ବର୍ଷ ଦେଖୁ ଦେଖୁ ଗଡ଼ିଗଲା । ମେରିଙ୍କ ମନ ବ୍ୟଗ୍ର ହୋଇ ଉଠିଲା । ସେ ରେଡ଼ିୟମର ରଙ୍ଗ ଓ ରୂପ କିପରି ହେବ ଭାବି ବ୍ୟାକୁଳ ହୋଇ ପଡ଼ିଲେ ।

ପେର ହତାଶ ହୋଇ କିଛିଦିନ ବିଶ୍ରାମ ନେବାକୁ ମନସ୍ଥ କଲେ, କିନ୍ତୁ ମେରି ସେହିପରି ଅଚଳ ରହି ଗବେଷଣା ଚଳାଇଲେ ।

ଶେଷରେ ୧୯୦୨ରେ ରେଡ଼ିୟମ ଆବିଷ୍କୃତ ହେଲା । ଏହା ତାଙ୍କୁ ଜୀବନରେ ସବୁଠାରୁ ବେଶି ଆନନ୍ଦ ଦେଇଥିଲା । ସେ ରେଡ଼ିୟମକୁ ସ୍ୱଚକ୍ଷୁରେ ଦେଖି ମୁଗ୍ଧ ହେଲେ ଓ ତାହାକୁ ଓଜନ ମଧ୍ୟ କରି ପାରିଲେ, ଯାହାକି ଏତେଦିନ ପର୍ଯ୍ୟନ୍ତ କୌଣସି ବୈଜ୍ଞାନିକ ଦ୍ୱାରା ସଫଳ ହୋଇ ପାରି ନ ଥିଲା ।

ସେ ତାଙ୍କ ଜୀବନରେ ୨ଟି ଜିନିଷକୁ ସବୁଠାରୁ ବେଶୀ ଭଲ ପାଉଥିଲେ । ତାହା ପେର ଏବଂ ରେଡ଼ିୟମ । ତାଙ୍କର ସାହସ ଓ ଧୈର୍ଯ୍ୟ ଅତୁଳନୀୟ ଥିଲା ଏବଂ ସେ କଷ୍ଟ ସହିଷ୍ଣୁ ଥିଲେ । ସେ ଆମରମାନଙ୍କ ପରି ଜଣେ ନାରୀ ଥିଲେ । କିନ୍ତୁ ତାଙ୍କର ଓ ଆମ୍ଭମାନଙ୍କ ଭିତରେ ଆକାଶ ପାତାଳ ପ୍ରଭେଦ ଅଛି । ରେଡ଼ିୟମ ଆବିଷ୍କାର ହେବା ଦ୍ୱାରା ବିଜ୍ଞାନ ଜଗତରେ ଯେ, କେତେ ଉପକାର ହୋଇଛି ତାହା ବୈଜ୍ଞାନିକମାନଙ୍କ ଛଡ଼ା ଅନ୍ୟ କେହି ଉପଲବ୍ଧି କରି ପାରିବେ ନାହିଁ । ଏହି ମହୀୟସୀ ନାରୀ ଆମ୍ଭମାନଙ୍କର ଚିର ନମସ୍ୟ ।

---

# ସାହସିନୀ ଗ୍ରେସ୍ ଡାର୍ଲିଂ

( ୧୮୧୫—୧୮୪୨ )

ଲେ—ହେମଲତା ମାନସିଂହ

ଉତ୍ତର ଇଂଲଣ୍ଡର ସମଗ୍ର ଉପକୂଳ ଶିଳାଶଂକୁଳ । କୂଳରୁ ସମୁଦ୍ର ଭିତରେ ବହୁଦୂର ଯାଏ ବହୁ ଛୋଟ ଛୋଟ ପାହାଡ଼ ପାଣି ଭିତରେ ବୁଡ଼ି ରହିଛି । ଅନେକ ସମୟରେ ଏ ଅଂଚଳରେ ଘନ କୁହୁଡ଼ି ହୁଏ ଓ ଝଡ଼ ତୋଫାନ ମଧ୍ୟ ହୁଏ । ଏଇ ଦୁଇ ଅବସ୍ଥାରେ ଅନେକ ଜାହାଜ ବୁଡ଼ାପାହାଡ଼ ଉପରେ ଅତର୍କିତ ଭାବରେ ବାଜି ବୁଡ଼ି ଯାନ୍ତି ଓ ଅନେକ ଲୋକ ମରନ୍ତି ।

ଜାହାଜମାନଙ୍କୁ ଏହି ବିପଦସଂକୁଳ କୂଳ ଦେଶରେ ବିପଦର ସଂକେତ ଦେବାପାଇଁ, ଇଂଲଣ୍ଡର ଏଇ ସମଗ୍ର ଉତ୍ତର ଉପକୂଳ ଧରି ଅନେକ ବତୀଘର ସବୁ ଗଢ଼ା ଯାଇଛି । ବତୀଘର-ମାନଙ୍କରେ ବରାବର ଲୋକ ଜଗୁଆଳୀ ଥାନ୍ତି । ରାତିରେ ଓ ମେଘୁଆ, କୁହୁଡ଼ିଆ ଦିନମାନଙ୍କରେ ବତୀଜାଳି, ଜାହାଜମାନଙ୍କୁ ବିପଦମୟ ପଥରେ ନ ଆସିବାକୁ ସେମାନେ ନାନାକ ସଂକେତ ଦିଅନ୍ତି ।

ଏଇପରି ଏକ ବତୀଘରେ ଉଇଲିୟମ ଡାର୍ଲିଂ ନାମକ ଏକ ଲୋକ ଜଗୁଆଳୀ ଥିଲେ । ତାଙ୍କ ସାଥିରେ ତାଙ୍କର ମାଇ ୨୩

ବର୍ଷର କନ୍ୟା ଗ୍ରେସ୍ ( ସୁଷମା ) ମଧ୍ୟ ଥାଏ । ଯେଉଁ ପାହାଡ଼ ଉପରେ ତାଙ୍କର ବତୀଘର ଥିଲା ତାହାର ନାମ ଲଙ୍ଗ୍-ଷ୍ଟୋନ୍ ବା ଲମ୍ବାପଥର । ଇଂଲଣ୍ଡର ନର୍ଦ୍ଦମ୍ବରଲଣ୍ଡ୍ ଜିଲ୍ଲାର ଉତ୍ତର କୂଳରେ ଏହି ସ୍ଥାନ ।

୧୮୩୮ ନଭେମ୍ବର ୭ ତାରିଖ ଦିନ ସେହି ଉପକୂଳରେ ଭୟଙ୍କର ଝଡ଼ ତୋଫାନ ହେଲା । ସମୁଦ୍ରରେ ପର୍ବତାକାର ଲହରୀ ସବୁ ଉଠିଲେ ଓ ପଡ଼ିଲେ । ସେହି ଘୋର ତୋଫାନରେ ପଡ଼ି 'ଫରଫାୟାର ସାୟାର' ନାମକ ଏକ ଜାହାଜ 'ଲମ୍ବାପଥର' ଦ୍ୱୀପର ଅଳ୍ପ ଦୂରରେ ଅଉ ଏକ ଏକ ବୁଡ଼ା ପାହାଡ଼ରେ ପିଟି ହୋଇ ଫାଟିଗଲା ଓ ୪୩ ଜଣ ଯାତ୍ରୀ ସହ ସଙ୍ଗେ ସଙ୍ଗେ ଜଳମଗ୍ନ ହୋଇଗଲା । ବାକି ୯।୧୦ ଜଣ ଯାତ୍ରୀ କୌଣସିମତେ ଅନ୍ୟ ଗୋଟିଏ ବୁଡ଼ାପାହାଡ଼ ନିକଟକୁ ଭାସିଯାଇ, ତାର ଶିଖର ଉପରେ କଷ୍ଟରେ ପଥର ଦିହକୁ ଜାକଧରି ପ୍ରାଣରେ ବଞ୍ଚିଗଲେ ।

ଲମ୍ବାପଥର ବତୀଘରୁ ଉଇଲିୟମ ଡାର୍ଲିଂ ଏହି ଦୁର୍ଘଟଣା ଦେଖିପାରିଲେ । କିନ୍ତୁ ସହାୟହୀନ ଅବସ୍ଥାରେ ସେହି ଉତ୍ତାଳତରଙ୍ଗ-ବ୍ୟାକୁଳ, ବାତ୍ୟାହତ ସମୁଦ୍ର ପାରିହୋଇ ବଞ୍ଚିଥିବା ଲୋକଗୁଡ଼ିକୁ କିପରି ସେ ଉଦ୍ଧାର କରିବେ, ତାହାର କୌଣସି ବାଟ ନ ପାଇ ସେ ସ୍ତମ୍ଭିତ ହୋଇ ବାତାୟନ ନିକଟରେ ଠିଆ ହୋଇଥାନ୍ତି ।

କିନ୍ତୁ କରୁଣହୃଦୟା ବାଳିକା ଗ୍ରେସ୍ ସେହି ବିପନ୍ନ ଯାତ୍ରୀମାନଙ୍କର ଦୁଃଖରେ ବିଗଳିତ ହୋଇ ପଡ଼ିଲା । ସେ ତାର ବାପାକୁ ଯେ କୌଣସି ମତେ ସେମାନଙ୍କୁ ଉଦ୍ଧାର କରିବାକୁ ବାରମ୍ବାର ଜିଦ୍ କରି କହିଲା । ବାପା, ଏକାକୀ କିପରି ସେହି ଝଡ଼ୁଆ ଦରିଆ ପାରି ହୋଇ ସେମାନଙ୍କୁ ଉଦ୍ଧାର କରିବେ କହିବାରୁ, ଗ୍ରେସ୍ ବାପାଙ୍କ ସାଥିରେ ଯିବାକୁ ମଧ୍ୟ ଜିଦ୍ ଧରିଲା ।

କରୁଣାବତୀ କନ୍ୟାର ନିବେଦନ ବାପା ପ୍ରତ୍ୟାଖ୍ୟାନ କରି ପାରିଲେ ନାହିଁ । ଶେଷରେ ପିତା ଓ କନ୍ୟା ଗ୍ରେସ୍, ଏକ ଛୋଟ ଜାଲି ବୋଟ ବାହାରିକରି ସେହି ବାତ୍ୟାକୁଳ ସମୁଦ୍ରରେ ଜୀବନ ଦେଇ ଜୀବନ ରକ୍ଷା କରିବାର ମହା ପୁଣ୍ୟକର୍ମରେ ବାହାରି ପଡ଼ିଲେ ।

ବାପ ଓ ଝିଅ ଯେତେ ଜୋରରେ ଅହୁଲା ମାରିଲେ ମଧ୍ୟ, ନୌକା ପାଦେ ଅଗକୁ ଗଲେ, ଲହଡ଼ାରେ ଠେଲି ହୋଇ ଦପାଦ ପଛକୁ ଚାଲି ଯାଉଥାଏ ।

ଜଣେ କୁମାରୀର ଅନଭ୍ୟସ୍ତ ବାହୁରେ ବଳ ବା କେତେ ? କିନ୍ତୁ ବାପ ଓ ଝିଅ କେହି ହଟିବାର ଲୋକ ନୁହନ୍ତି । ବହୁକଷ୍ଟରେ ସେମାନେ ଯେଉଁ ପାହାଡ଼ରେ କେତେକ ଯାତ୍ରୀ ବର୍ତ୍ତି ରହିଥିଲେ, ସେଠି ପହଞ୍ଚି ଓ ଦଉଡ଼ି ସାହାଯ୍ୟରେ ୪ଟି ପୁରୁଷ ଓ ଜଣେ ସ୍ତ୍ରୀ ଲୋକଙ୍କୁ କୌଣସି ମତେ ନାଆକୁ ଅଣାଇ ବତୀଘରକୁ ଫେରି-ଥିଲେ । ଅଧିକା ଲୋକଙ୍କ ପାଇଁ ଛୋଟ ନାଆରେ ଆଉ ଜାଗା ନ ଥିଲା ।

କିନ୍ତୁ ଆଉ ଚାରିଜଣ ସେଠି ରହିଗଲେ । ଏଇ ଥରକର ଯିବା ଓ ଆସିବାରେ ବୃଦ୍ଧ ଡାର୍ଲିଙ୍ଗ୍ ଏକାବେଳେକେ କ୍ଳାନ୍ତ ହୋଇ ପଡ଼ିଥିଲେ । ତାଙ୍କର ଆଉ ଦ୍ୱିତୀୟଥର ଯିବାର ପ୍ରଶ୍ନ ଉଠିଲା ନାହିଁ । କିନ୍ତୁ ସମସ୍ତଙ୍କ ଆଖି ଆଗରେ ବାକୀ ଚାରିଜଣ ଲୋକ କ'ଣ ମରିଯିବେ ?

ବୀର ଓ କରୁଣାବତୀ ଗ୍ରେସ ଥାଉଁ ଥାଉଁ ତାହା ସମ୍ଭବ ନୁହେଁ । ସେ ରକ୍ଷା ପାଇଥିବା ଦୁଇଜଣ ନାବିକଙ୍କୁ ଧେନି ପୁଣି ଥରେ ସମୁଦ୍ରରେ ତା'ର ଛୋଟ ନୌକା ମେଲିଦେଲା ଓ

ପ୍ରଥମ ଥର ପରି ଏଥର ମଧ୍ୟ ଅପରିସୀମ କଷ୍ଟ ସ୍ୱୀକାର କରି ବାକି ଯାତ୍ରୀମାନଙ୍କର ପ୍ରାଣ ରକ୍ଷା କଲା ।

ଇଂଲଣ୍ଡରେ ଏହି ସମ୍ବାଦ ପ୍ରଚାରିତ ହୁଅନ୍ତେ ଚାରିଆଡ଼େ ଚହଳ ପଡ଼ିଗଲା । ଗ୍ରେସ୍ ଡାର୍ଲିଂ ଇଂରେଜ ଜାତିର ଏକ ବୀରାଙ୍ଗନା ରୂପେ ଚାରିଆଡ଼େ ସମ୍ବର୍ଦ୍ଧିତା ହେଲା । ବ୍ରିଟିଶ ପାର୍ଲିମେଣ୍ଟ୍ ତା'ପାଇଁ ଏକ ପେନ୍‌ସନ୍ ଖଞ୍ଜି ଦେଲେ । 'ମାନବିକ ସଭା' ଗ୍ରେସର ଅସାଧାରଣ ମାନବସେବା ଯୋଗୁଁ ତାକୁ ଏକ ସ୍ୱର୍ଣ୍ଣପଦକ ପୁରସ୍କାର ଦେଲେ । କିନ୍ତୁ ଦୁଃଖର ବିଷୟ ଏହି ଯେ ଗ୍ରେସ ବେଶୀ ଦିନ ବଞ୍ଚି ପାରି ନ ଥିଲା । ଏହି ଘଟଣାର ମାତ୍ର ଚାରିବର୍ଷ ପରେ ଯକ୍ଷ୍ମା ରୋଗରେ ସେ ପ୍ରାଣତ୍ୟାଗ କଲା । ଅନେକେ କହନ୍ତି ସେହି ସାହସିକ କର୍ମ ଯୋଗୁ ତାର ଫୁସଫୁସ୍ ଯେଉଁ ମାଡ଼ ପାଇଥିଲା, ସେଇଥିରେହିଁ ସେ ରୋଗର ଉତ୍ପତ୍ତି ହୋଇଥିଲା ।

---

# ମେରି ରବର୍ଟସ୍ ରାଇନ୍‌ହାର୍ଟ

ଆମେରିକାର ଏକ ମହିଳାଙ୍କ

ଅଦ୍ଭୁତ କାହାଣୀ

( ଅନୂଦିତ )

ଲମ୍ବୋଦର ମାନସିଂ

କୋଟି କୋଟି ଲୋକ ମେରି ରବର୍ଟସ୍ ରାଇନ୍‌ହାର୍ଟ ଗଳ୍ପ ପଢ଼ିଛନ୍ତି । ସେ ନିଜେ ଚଉରାଳିଶିଟି ବହି ଲେଖିଛନ୍ତି ଏବଂ ପତ୍ରିକାରେ ହଜାର ହଜାର ପୃଷ୍ଠାର ଗଳ୍ପ ଲେଖିଛନ୍ତି । ସେ ତିନୋଟି ସନ୍ତାନର ମାତା ହେବା ପରେ ଲେଖିବାକୁ ଆରମ୍ଭ କଲେ । ଖ୍ୟାତି ଅର୍ଜନ ପାଇଁ ସେ ବହି ଲେଖି ନ ଥିଲେ । ଅର୍ଥାଭାବରୁ ଋଣରେ ପଡ଼ି ଲେଖିଥିଲେ ।

ତାଙ୍କର ପ୍ରଥମ ଗଳ୍ପ ପାଇଁ ସେ କେବଳ ଛ ପାଉଣ୍ଡ ଦଶ ଶିଲିଂ ପାଇଥିଲେ, କିନ୍ତୁ ବର୍ତ୍ତମାନ ଷଭେନ୍ଦ୍ର ପତ୍ରିକା ତାଙ୍କର ଗୋଟିଏ ଗଳ୍ପ ପାଇଁ ୬,୮୦୦ ପାଉଣ୍ଡ ଦେବାକୁ ରାଜି ଅଛନ୍ତି । ସେ ବର୍ତ୍ତମାନ ଆମେରିକାର ସବୁଠୁ ବେଶି ଟଙ୍କା ପାଉଥିବା ଲେଖକମାନଙ୍କ ମଧ୍ୟରୁ ଜଣେ । କିନ୍ତୁ ସେ କହନ୍ତି ତାଙ୍କୁ ଲେଖିବାକୁ ଅତି ଖରାପ ଲାଗେ ।

ସେ ଥରେ ସିନେମା ନିମିତ୍ତ ଏକ ସଙ୍ଗରେ ଅନେକ ଗଳ୍ପକୁ ପନ୍ଦର ପାଉଣ୍ଡରେ ବିକିଥିଲେ କିନ୍ତୁ ବର୍ତ୍ତମାନ ହଲିଉଡ଼କୁ ଯାଇ ବର୍ଷକୁ ଦଶହଜାର ପାଉଣ୍ଡ ପାଇଁ ଗଳ୍ପ ଲେଖିବାକୁ ମନା କରିଛନ୍ତି ।

ମେରି ରାଇନ୍‌ହାର୍ଟ ଜୀବଦ୍ଦଶାରେ ଅସୁସ୍ଥତା ହେତୁ ବହୁଥର ଅପରେଶନ ଭୋଗିଛନ୍ତି । କିନ୍ତୁ ଚାଲବୁଲି କରି ନ ପାରୁଥିବା ସମୟରେ ଖଟରେ, ଚକଲଗା ଚଉକିରେ ଏବଂ ଡାକ୍ତରଖାନାରେ ମଧ୍ୟ ଗଳ୍ପ ଲେଖୁଥିଲେ । ଏକଦା ଡିପ୍‌ଥେରିଆ ଭୋଗୁଥିବା ସମୟରେ ସେ କବିତା ଲେଖିଥିଲେ ଏବଂ କବିତାଟିକୁ ଡାକରେ ପଠାଇବା ପୂର୍ବରୁ କାଗଜଟିରେ ଜୀବାଣୁ ଥିବା ଭୟରେ ତାକୁ ବିଶୋଧନ କରି ପଠାଇଥିଲେ । ମେରି ରାଇନ୍‌ହାର୍ଟ ଅନେକ ଥର କହିଅଛନ୍ତି ଯେ, ସେ ଏତେଥର ରୋଗ ଭୋଗି ବିଛଣାରେ ଶୋଇ ନ ଥିଲେ ଏତେ ବହି ଲେଖି ପାରି ନ ଥାନ୍ତେ । ବିଶୋଧିତ କବିତାଟିର ଆଦୌ ବିକ୍ରୟ ହେଲା ନାହିଁ; ପ୍ରକୃତରେ ତାଙ୍କର କୌଣସି କବିତା ବିକ୍ରୀ ହୋଇ ନ ଥିଲା । ସେ ଥରେ ଶିଶୁମାନଙ୍କ ନିମିତ୍ତ ଏକ କବିତା ବହି ଲେଖି ନିଉୟର୍କରେ ଏକ ପ୍ରକାଶକଙ୍କୁ ପାଇବା ଆଶାରେ ପିଟ୍‌ସବର୍ଗରୁ ରେଲରେ ଯାଇଥିଲେ । ସେଠାରେ ପ୍ରକାଶକ ଅନୁସନ୍ଧାନରେ ଏକ ପ୍ରକାଶକଙ୍କଠାରୁ ଅନ୍ୟ ପ୍ରକାଶକଙ୍କ ପାଖକୁ ଯାଇ ତାଙ୍କ ପାଦରେ ଫୋଟକା ହୋଇଗଲା । କିନ୍ତୁ ତାଙ୍କର ସବୁ ଶ୍ରମ ବୃଥା ହେଲା ।

ଅକୃତକାର୍ଯ୍ୟ ହୋଇ ନିରାଶ ହୃଦୟରେ ସେ ଗୃହକୁ ପ୍ରତ୍ୟାଗମନ କଲେ ଏବଂ ଲେଖିବାର ସମସ୍ତ ଆଶା ବର୍ଜନ କଲେ ।

ଏହି ସମୟରେ ହଠାତ୍ ତାଙ୍କର ସମସ୍ତ ସଞ୍ଚିତ ଧନ ବ୍ୟବହୃତ ହୋଇଗଲା ଏବଂ ଋଣ ହଠାତ୍ ଦୁଇ ହଜାର ଶ୍ରହଶହ ପାଉଣ୍ଡ ହୋଇଗଲା ।

ନିଜ ସ୍ୱାମୀଙ୍କୁ ସାହାଯ୍ୟ କରିବାକୁ ସେ ଚେଷ୍ଟା କଲେ ଏବଂ ଲେଖିବା ଦ୍ୱାରା ଅର୍ଥ ଅର୍ଜନ କରିବାକୁ ଇଚ୍ଛା କରିଥିଲେ । କିନ୍ତୁ ସେ ଗୃହ କାର୍ଯ୍ୟରେ ସର୍ବଦା ବ୍ୟସ୍ତ ରହି କାର୍ଯ୍ୟ ଶେଷରେ ଅତି କ୍ଲାନ୍ତ ହୋଇ ପଡ଼ନ୍ତି ଏବଂ ରାତିରେ ପ୍ରତି ଦୁଇଟାରେ ଉଠି ତାଙ୍କ ଶିଶୁକୁ ଦୁଗ୍ଧ ଗରମ କରି ଖୁଆନ୍ତି ।

ଦିନେ ଡାକ୍ତର ରାଇନହାର୍ଟ (ତାଙ୍କ ସ୍ୱାମୀ ଜଣେ ଡାକ୍ତର) ଆସି ଏକ ରୋଗୀ ବିଷୟ କହିଲେ । ରୋଗୀଟିର ମୁଣ୍ଡ ଖରାପ ହୋଇ ସେ ପୂର୍ବକଥା ସବୁ ଭୁଲି ଯାଇଅଛି । ସେ (ରୋଗୀ) ନିଜକୁ ଏକ ଯୁବକ ଏବଂ ନିଜ ସ୍ତ୍ରୀଙ୍କୁ ଏକ ଅଦ୍ଭୁତ ନାରୀ ବୋଲି ଭାବୁଥିଲେ । ଘରେ ଖେଳୁଥିବା ପିଲାମାନଙ୍କୁ ଦେଖାଇ ତାଙ୍କର ନିଜ ପିଲା ବୋଲି କହିବାକୁ ସେ ହସୁଥିଲେ ।

ଶ୍ରୀମତୀ ରାଇନହାର୍ଟ ଏହି ଘଟଣାକୁ ମୂଳ ରଖି ଏକ ଗଳ୍ପ ସେହି ରାତିରେ ଲେଖି ଗୋଟିଏ ପତ୍ରିକାକୁ ପଠାଇ ଦେଲେ । ପତ୍ରିକାଟି ତାଙ୍କ ଗଳ୍ପକୁ ଗ୍ରହଣ କରି ଛ' ପାଉଣ୍ଡ ଷୋହଳ ଶିଲିଂ ପଠାଇ ଆହୁରି ଗଳ୍ପ ପଠାଇବା ପାଇଁ ଅନୁରୋଧ କଲେ ।

ତେଣୁ ସେ ନିଜ ବିଶ୍ରାମ ସମୟରେ ଲେଖିବାକୁ ଆରମ୍ଭ କଲେ । କିନ୍ତୁ ତାଙ୍କ ଦୈନିକ କାର୍ଯ୍ୟକ୍ରମକୁ ପରୀକ୍ଷା କଲେ ଜଣାଯିବ ଯେ ତାଙ୍କର ବେଶି ବିଶ୍ରାମ ସମୟ ନ ଥିଲା ।

ସେ ସ୍ୱହସ୍ତରେ ତାଙ୍କର ଭଜନମହଲ ବା ସଭାଗୃହକୁ ପରିଷ୍କାର କରୁଥିଲେ ଏବଂ ଗୃହର ସମସ୍ତ ବସ୍ତୁକୁ ପରିଷ୍କାର ରଖୁଥିଲେ ।

ସର୍ବଦା ସ୍ୱାମୀ ଏବଂ ପୁତ୍ରମାନଙ୍କର ସେବା କରୁଥିଲେ । ଭୃତ୍ୟ ଥିଲେ ମଧ୍ୟ ନିଜେ ରନ୍ଧନରେ ସାହାଯ୍ୟ କରୁଥିଲେ ବା ଭୃତ୍ୟଙ୍କୁ ରନ୍ଧନ ବିଷୟରେ ଉପଦେଶ ଦେଉଥିଲେ ଏବଂ ବଜାରରୁ ଯାବତୀୟ ବିଷୟ କ୍ରୟ କରୁଥିଲେ । ଅଗ୍ରୁର ଏବଂ ଜାମ୍ ମଧ୍ୟ ସେ ତିଆରି କରି ରଖୁଥିଲେ । ନିଜର ସ୍ୱାମୀ ଏବଂ ପୁତ୍ରମାନଙ୍କର ସମସ୍ତ ବସ୍ତ୍ର ସ୍ୱହସ୍ତରେ ସିଲାଇ କରୁଥିଲେ ଏବଂ ଦୀର୍ଘ ଚଉଦବର୍ଷକାଳ ନିଜର ରୋଗୀ ମାତାଙ୍କର ସେବା କରୁଥିଲେ । ସେ ଡାକ୍ତର ରାଇନ୍‌ହାର୍ଟଙ୍କର ରସିଦ ଲେଖୁଥିଲେ ଏବଂ ଖର୍ଚ୍ଚ ଟିପି ରଖୁଥିଲେ । ସମୟ ସମୟରେ ସେ ସ୍ୱାମୀଙ୍କୁ ସାଙ୍ଘାତିକ, ରୋଗୀଙ୍କ ଚିକିତ୍ସାରେ ସାହାଯ୍ୟ କରୁଥିଲେ । ସନ୍ଧ୍ୟାସମୟରେ ଡାକ୍ତର ରାଇନହାର୍ଟ ରୋଗୀ ଦେଖି ଯାଇଥିବା ସମୟରେ ସେ ଅଳ୍ପ କିଛି ଲେଖିବାକୁ ସମୟ ପାଆନ୍ତି ।

କିନ୍ତୁ ଏହି ଲେଖା ଆରମ୍ଭର ଏକ ବର୍ଷ ପରେ ମେରୀ ରାଇନ୍‌ହାର୍ଟ ପଞ୍ଚଗୃଳଶଟି ଗଳ୍ପ ଲେଖି ତିନିଶହ ଷାଠିଏ ପାଉଣ୍ଡ ପାଇଥିଲେ ।

ମେରୀ ନିଜେ ରହସ୍ୟମୟ ଗଳ୍ପ ଲେଖିଥିଲେ ଏବଂ ଦୁଇଟି ଭୂତଥିବା ଘରେ ରହିଥିଲେ । ଓ୍ୱାଶିଙ୍ଗ୍‌ଟନ୍‌ରେ ଏକ ବ୍ୟକ୍ତି ମରିଥିବା ଗୃହରେ ରହିବା ପରେ ପରେ ଅଦ୍ଭୁତ ଘଟଣା ଘଟିଥିଲା ।

ଶୟନକକ୍ଷର ଘଣ୍ଟା କେହି ନ ଥିବା ସମୟରେ ମଧ୍ୟ ବାଜୁଥାଏ । ଦ୍ୱାରଗୁଡ଼ିକ ନିଜେ ନିଜେ ଖୋଲି ହୋଇଯାନ୍ତି । ସବୁ ଦ୍ୱାର ବନ୍ଦ ହୋଇଥିଲେ ମଧ୍ୟ ବିଭିନ୍ନ ପକ୍ଷୀ ଏବଂ ବାଦୁଡ଼ି ଅଦ୍ଭୁତ ଭାବରେ ଗୃହରେ ପ୍ରବେଶ କରନ୍ତି । ଅର୍ଦ୍ଧରାତ୍ରରେ ଦ୍ୱାରରେ କିଏ ଜୋରରେ ଆଘାତ କଲାପରି ଶବ୍ଦ ହୁଏ । ରାତି ଦୁଇଟା ସମୟରେ

ଟାଇପ୍‌ରାଇଟରରେ କିଏ ଅକ୍ଷର ବାଡ଼ଉଥାଏ । କୁକୁରଗୁଡ଼ିକ ହଠାତ୍ ଖାଲିଘର ଗୁଡ଼ିକୁ ଦୌଡ଼ିଯାନ୍ତି ଏବଂ ଫେରିବା ସମୟରେ ଡରି ଡରି ପେଟରେ ଘୁଷୁରି ଘୁଷୁରି ଫେରନ୍ତି ।

ଥରେ ଗୋଟାଏ କୁଣ୍ଡରେ ଥିବା ଗଛ କୁଣ୍ଡରୁ ବାହାରି ଘର ମଝିରେ ପଡ଼ି ରହିଥିବାର ଦେଖାଗଲା । ରାତିସାରା ଅଦ୍ଭୁତ ଶବ୍ଦ ହୁଏ । ଟେବୁଲ ଓ ଚୌକି ମନକୁ ମନ ଘୁଞ୍ଚିଯାନ୍ତି ।

ମେରୀ ରାଇନହାର୍ଟ ବଡ଼ ଭୟ କଲେ । ରାତିରେ ତାଙ୍କ ନିଦ୍ରା ଭଲ ହେଲା ନାହିଁ । ଏକ ବ୍ୟକ୍ତି ତାଙ୍କୁ ଭୂତମାନଙ୍କ ସଙ୍ଗେ କଥା କହିବାକୁ ଉପଦେଶ ଦେଲା ।

ଆରଦିନ ରାତିରେ ଗୋଟେ ଝରକା ମନକୁ ମନ ବନ୍ଦ ହୋଇଯିବାରୁ ମେରୀ ଗୋଟାଏ କାନ୍ଥକୁ ଅଉଜିପଡ଼ି ଭୂତକୁ ଥଙ୍ଗେଇ ଥଙ୍ଗେଇ କହିଲେ । ଏହି ସମୟରେ ହଠାତ୍ ଏକ ଘଣ୍ଟି (ବୈଦ୍ୟୁତିକ) ବାଜିବାକୁ ଲାଗିଲା । ମେରୀ ଖୁବ୍ ଭୟ କରି ଶେଷକୁ ଜାଣିଲେ ଯେ ନିଜେ ଘଣ୍ଟିର ସୁଇଚ ଉପରେ ଆଉଜି ପଡ଼ିଛନ୍ତି । ମେରୀ ନିଜେ ଭୂତକୁ ବିଶ୍ୱାସ କରନ୍ତି ନାହିଁ । କିନ୍ତୁ ସେ ସ୍ୱୀକାର କରିଛନ୍ତି ଯେ ସମୟ ସମୟରେ ତାଙ୍କର ମନେହୁଏ ଯେପରି କି ଭୂତସବୁ ଆସି କ୍ରୀଡ଼ା କରୁଛନ୍ତି ।

---

# ଏକ ସମସ୍ୟାରେ ଜଣେ ଡାକ୍ତର

ଲେଖିକା—ଓଲଗା ଚେକୋଟକିନା

ଅନୁବାଦକ—ଶ୍ରୀ ହିମାଚଳ ଜେନା ସାମନ୍ତ

( ବମ୍ବେରୁ ପ୍ରକାଶିତ ସାପ୍ତାହିକ 'କ୍ରସ୍‌ରୋଡ଼ସ୍' ପତ୍ରିକାର ୧୯୫୦ ଜୁଲାଇ ୭ ତାରିଖ ସଂସ୍କରଣରୁ ଅନୁବାଦିତ )

ଲୋଡାନ୍-ଓ୍ୱେନ୍ ଗାଁର ଗୋଟିଏ ଗରିବ କେଉଟ ପରିବାରରେ ଦୁର୍ଘଟଣାଟିଏ ଘଟିଲା । ଝିଅଟିଏ ଜନ୍ମହେଲା । ଯେତେବେଳେ ବନ୍ଧୁବାନ୍ଧବମାନେ ଆସିଲେ, ମା' ଦୋଷୀ ଭଳି ଆଖି ତଳକୁ ନୁଆଁଇ ଦେଲେ ଏବଂ ବାପା ତାଙ୍କ ସ୍ତ୍ରୀଙ୍କ ଦିଗକୁ ଥରେମାତ୍ର ନ ଚାହିଁ, ଘର ଭିତରେ ଚାରିଦିଗେ ଦୁଃଖରେ ପଦଚାରଣ କଲେ । ଅନେକ ଦିନ ପର୍ଯ୍ୟନ୍ତ ଘରଟି ଦୁଃଖପୂର୍ଣ୍ଣ ବାୟୁମଣ୍ଡଳରେ ଭାରାକ୍ରାନ୍ତ ହୋଇଥିଲା ।

ଦୁଃଖର ଆଘାତରେ ସେମାନେ କ'ଣ କରିପାରନ୍ତେ । ପରିସ୍ଥିତି ଯେପରି ଥିଲା, ସେଥିରେ ଜୀବନ ଅତ୍ୟନ୍ତ କଠିଣ ହୋଇଥିଲା । ସେହି କୁଳର ପିଠିରେ ଅସହ୍ୟ ବୋଝ ଏବଂ ବର୍ତ୍ତମାନ ଏଠାରେ ପୋଷିବା ପାଇଁ ଆଉ ଗୋଟିଏ ପେଟ ।

ସେମାନେ ବାଳିକାଟିର ନାମ ଦେଲେ କାନ୍ କେ-ଚନ୍ । ସେ ଯେତେବେଳେ ଗୃକଣ ଦିନର, ତାର ବାପା ମା' ତାକୁ ଅନ୍ୟ ଗୋଟିଏ ପରିବାରକୁ ବିକିଦେଲେ ସେମାନଙ୍କର (ନୂତନ ପରିବାରର) ଜ୍ୟେଷ୍ଠ ପୁଅର 'ଭାର୍ଯ୍ୟା' ଭାବେ । କାନ୍ କେ-ଚନର ଅନ୍ୟ ପାଞ୍ଚ ଭଉଣୀଙ୍କର ବି ସେହି ଦଶା ଘଟିଥିଲା । ଏହା ଗୋଟିଏ ଅତି ଭୟଙ୍କର କଥା । କାରଣ ସେହି 'ବାଳିକା ଭାର୍ଯ୍ୟା' (ଯେପରି ଚୀନାର ଏହି ହତଭାଗିନୀ ବାଳିକାମାନଙ୍କୁ ଅନେକ ଦିନରୁ ଡକାଯାଉଥିଲା ) ଯେଉଁ ଘରକୁ ବିକାଯାଉଥିଲା, ସେହି ଘରର ଗୋଟିଏ ପ୍ରକୃତ ଦାସୀ ଭଳି ରହୁଥିଲା । ଯେ କେହି ତା' ଉପରେ ହୁକୁମ ଜାରି କରି ପାରୁଥିଲେ ।

ଘର ଭିତରକୁ ଯିବା ଅଧିକାର ତାର ନ ଥିଲା । ଗୁହାଳରେ ହିଁ ତାର ସ୍ଥାନ । ଶୀତ ଏବଂ ଗ୍ରୀଷ୍ମ ସବୁ ଋତୁରେ ଗାଈଗୋରୁ ଚରାଇବା ଠାରୁ ସବୁ କଠିଣ କାମ ସେ କରୁଥିଲା ଏବଂ ଛିଣ୍ଡା ପୋଷାକ ପିନ୍ଧୁଥିଲା । ଯେ କେହି ଇଚ୍ଛା କଲେ ତାକୁ ମାରି ପାରୁଥିଲେ, କିନ୍ତୁ କିଛି ଅଧିକ ଭାତ ଖାଇବାକୁ ଦେବାପାଇଁ କେହି ବି ନ ଥିଲା ।

ଯାହାକୁ ବିଭା ହେବାପାଇଁ କାନ୍ କେ-ଚନ୍‌କୁ ବିକା ଯାଇଥିଲା, ସେହି ଜ୍ୟେଷ୍ଠ ବାଳକଟି ହଠାତ୍ ମରିଗଲା । ତାର ପରେ ପ୍ରଶ୍ନ ହେଲା, ଜ୍ୟେଷ୍ଠ ଭାର୍ଯ୍ୟାଟିକୁ କଣ କରାଯିବ । ତାକୁ ତା' ବାପା ମା'ଙ୍କ ନିକଟକୁ ଫେରାଇ ଦେବାକୁ ବି କଥା ପଡ଼ିଲା । ତା' ପରେ ଭବିଷ୍ୟତରେ ଜନ୍ମହେବା ପୁଅର ସ୍ତ୍ରୀ ଭାବେ ରଖାଗଲା । ସେମାନେ ପୁଅଟିଏ ଜନ୍ମହେବା ଲାଗି ଅନେକ ଦିନ ଅପେକ୍ଷା କଲେ, କିନ୍ତୁ ସେ ଜନ୍ମ ହେଲା ନାହିଁ ।

ତା' ପରେ ଯେତେବେଳେ କାନ୍ କେ-ଚିନ୍‌କୁ ତେର ବର୍ଷ ହେଲା, ତା'ର ନୂଆ ବାପା ମା' ତାକୁ ଘରକୁ ଆସିବାକୁ ଅନୁମତି ଦେଲେ । ବର୍ତ୍ତମାନ ତା'ର କାର୍ଯ୍ୟ ହେଲା କୁଟୁମ୍ବର ସମସ୍ତଙ୍କପାଇଁ ଘାସ ବା ପାଳର ଯୋତା ତିଆରି କରିବା ଏବଂ କେବଳ ଧାନ-ଅମାରରେ ନୁହେଁ, ଘରେ ମଧ୍ୟ କାମ କରିବା ।

ଯେତେବେଳେ କାନ୍ କେ-ଚିନ୍‌କୁ ସତର ବର୍ଷ ବୟସ, ସେମାନେ ତାକୁ ପୁଣି ଅନ୍ୟ ଗୋଟିଏ ପରିବାରକୁ ବିକି କରିଦେବାକୁ ଇଚ୍ଛା କଲେ । ଏଥର ବାଳିକାଟି ଆପତ୍ତି କଲା । ତାର ସବୁ ନୈତିକତା, ସବୁ କଠୋରତା ଏବଂ ମନର ଶକ୍ତି ଠୁଳକରି ସେ କହିଲା, "ମତେ ବିକିବାକୁ ଚେଷ୍ଟା କରନାହିଁ । ମୁଁ ଗୋଟିଏ ମଣିଷ ଏବଂ ମଣିଷପରି ବଞ୍ଚିବାକୁ ଚାହେଁ । ଯେତେବେଳେ ମୁଁ ପ୍ରେମ କରିବି, ସେତେବେଳେହିଁ ବିବାହ ହେବି ଏବଂ କେହି ଜଣେ ମୋ ପାଇଁ ଧନ ଦେବାକୁ ନୁହେଁ ।"

ଚୀନ୍‌ର ଗାଁ ଗୁଡ଼ିକରେ କେହି କେବେ ଏପରି ଆପତ୍ତି କରିବାକୁ ସାହସ କରି ନ ଥିଲା । କିନ୍ତୁ ବର୍ତ୍ତମାନ ଦେଖାଗଲା ଯେ, କାନ୍ କେ-ଚିନ ଏକାକୀ ନୁହେଁ, ଗାଁର ସବୁ ସ୍ତ୍ରୀ ତାକୁ ସମର୍ଥନ କଲେ । ଏହି ବାଳିକାଟିର ଭାଗ୍ୟ ଭିତରେ ସେମାନେ ନିଜର ଏବଂ ସେମାନଙ୍କର ଝିଅମାନଙ୍କର ଜୀବନ ଦେଖିଲେ ।

ସରଳା ଚୀନା ବାଳିକା କେଉଁଠାର ଝିଅ କାନ୍ କେ-ଚିନ୍‌ର ଏହି ଆପତ୍ତି ଚିନା ସ୍ତ୍ରୀର ସାମ୍ୟ ଏବଂ ସ୍ୱାଧୀନତାର ଗୋପନସ୍ୱପ୍ନକୁ ମୂର୍ତ୍ତିମନ୍ତ କରି ତୋଳିଲା । ଏହା ଗୋଟିଏ ଦୀର୍ଘ କାଳସ୍ଥାୟୀ ଏବଂ କଠିଣ ସଂଗ୍ରାମରେ ପରିଣତ ହେଲା ଏବଂ ବୋଧହୁଏ ଏହି ସଂଗ୍ରାମହିଁ ଚିନ୍‌ର ଗ୍ରାମ୍ୟ ସ୍ତ୍ରୀମାନଙ୍କୁ ଏକଯୁଟ କରାଇବା

ଆନ୍ଦୋଳନରେ ସାହାଯ୍ୟ କଲା । ଅନନ୍ତ ବଳେସ୍ତେ ସେମାନେ ସେହି ଅଞ୍ଚଳରେ ପ୍ରଥମେ ମହିଳାମାନଙ୍କ ଗଣତାନ୍ତ୍ରିକ ସଂଗଠନ ଗଢ଼ିଲେ ଏବଂ ସେହି ବାଳିକାଟି ସାଂଗଠନର କାର୍ଯ୍ୟ ଶେଷ ହେବାପରେ ଲେଖା ଓ ପଢ଼ା ଶିଖିବାରେ ସମୟ କଟାଇ ଦେଉଥାଏ ।

ଦଳଗତ ଆନ୍ଦୋଳନ ଯେତେବେଳେ ସେହି ଜିଲ୍ଲାରେ ବ୍ୟାପିବାକୁ ଆରମ୍ଭ କଲା, କାନ୍ କେ-ଚନ୍ ଏବଂ ସେହି ଗାଁର ଆଉ କେତେକ ବାଳିକା ଗୋଟିଏ ସ୍ୱତନ୍ତ୍ର ଦଳରେ ଯୋଗ ଦେଲେ । ତାହା ଗୋଟିଏ ନୂତନ ଜୀବନର ପ୍ରାରମ୍ଭ, ଯାହା ତାକୁ ଆନନ୍ଦ ଦେଲା । କଠିଣ ସଶସ୍ତ୍ର ଯୁଦ୍ଧରେ ବର୍ଷ ବର୍ଷ ବିତିଗଲା । କାନ୍ କେ-ଚନ୍ ବର୍ତ୍ତମାନ ଜଣେ କମ୍ୟୁନିଷ୍ଟ ଏବଂ ଗୋଟିଏ ଦଳର ରାଜନୈତିକ ନେତ୍ରୀ ।

ଦଳଗତ ଜୀବନ ତାକୁ ସେହି ପୁରୁଷ ନିକଟରେ ପହଞ୍ଚାଇ ଦେଲା, ଯାହାକୁ ସେ ନିଜର ସ୍ୱାଧୀନ ମନରେ ଏବଂ ହୃଦୟର ଡାକରେ ପ୍ରେମ ଅର୍ପଣ କଲା । କାନ୍ କେ-ଚନ୍ ଚୀନାର ଜନତାର ମୁକ୍ତି-ସେନାର ପ୍ରଧାନ ସେନାପତି ଚୁ-ତେଙ୍କର ସ୍ତ୍ରୀ ହେଲା··· ··· ।

---

ମୁଦ୍ରାକର—ଶ୍ରୀ ରବୀନ୍ଦ୍ରନାଥ ମହାନ୍ତି, କଟକ ପବ୍ଲିଶିଂ ପ୍ରେସ,
କଟକ—୧୯୬୦

